*ରାଧାନାଥ ରଥ ସ୍ମାରକ ପ୍ରକାଶନ*

**ଖରସୁଆଁରୁ କୁଲାବିରି**

ନିଶାକର ଦାସ



ଫେବୃଆରୀ, ୨୦୦୫

ପ୍ରକାଶକ:

ନୀଳକଂଠ ରଥ

୧୬-୧୯/୫ ପଟୱର୍ଧନ ବାଗ, ଏରଂଡ଼ୱଣେ,

ପୁଣେ ୪୧୧ ୦୦୪, ମହାରାଷ୍ଟ୍ର.

ବିତରକ:

ଶିକ୍ଷାସଂଧାନ

ଏ-୧୨, ହାଉସିଂ ବୋର୍ଡ କଲୋନୀ, ବରମୁଂଡ଼ା,

ଭୁବନେଶ୍ୱର ୭୫୧ ୦୦୩, ଓଡ଼ିଶା.

ପ୍ରଚ୍ଛଦପଟ: ସୁଧୀର ପଟେଲ, ପୁଣେ.

ମୁଦ୍ରକ:

ସଂସାର ପ୍ରେସ୍

ତଳ ତେଲେଂଗା ବଜାର

କଟକ ୭୫୩ ୦୦୯, ଓଡ଼ିଶା.

ମୂଲ୍ୟ: ପଚିଶ ଟଂକା

## ପ୍ରକାଶକର ଦି ପଦ

ମୁଁ ଜଣେ ପ୍ରବାସୀ ଓଡ଼ିଆ । ଗତ ପଂଚାବନ ବର୍ଷ ହେଲା ମହାରାଷ୍ଟ୍ରର ପୁଣେ ନଗରୀରେ ରହୁଚି । ଫଳରେ ମରାଠୀ ଭାଷା ପଢ଼ିବା ଓ ଅତି ଶୁଦ୍ଧ ନହେଲେ ବି କହିବାର ଅଭ୍ୟାସ । ଗତ ପ୍ରାୟ ତିରିଶ ଚାଳିଶ ବର୍ଷ ଭିତରେ ମରାଠୀ ଭାଷାରେ ଦୟା ପଓ୍ୱାରଂକ ଆତ୍ମଜୀବନୀରୁ ଆରଂଭ କରି ଦଳିତ ସମାଜର ବହୁ ସୁନାମଧେୟ ଓ ଅନାମଧେୟ ସ୍ତ୍ରୀ ପୁରୁଷଂକ ଆତ୍ମଚରିତ, ସେମାନଂକ ଲିଖିତ କବିତା, ଗଳ୍ପ ପ୍ରକାଶ ପାଇଲାଣି । [ମହାରାଷ୍ଟ୍ରରେ ପୂର୍ବାସ୍ପୃଶ୍ୟ ସମାଜର ପରିଚୟ 'ଦଳିତ' ସମାଜ ଓ ସେମାନେ ନିର୍ମାଣ କରୁଥିବା ସାହିତ୍ୟକୁ ଦଳିତ ସାହିତ୍ୟ ବୋଲି ଉଲ୍ଲେଖ କରିବାର ପ୍ରଥା ପ୍ରାୟ ସେତିକି କାଳର ହେଲାଣି । ମୋ ଜାଣିବାରେ ଓଡ଼ିଆରେ ଏ ଶବ୍ଦର ଏ ପ୍ରକାରର ବ୍ୟବହାର ଏବେ ମଧ୍ୟ ନାହିଁ କହିଲେ ଚଳେ । କିଛି ବର୍ଷ ତଳେ ଏକ ଓଡ଼ିଆ ପତ୍ରିକାରେ ଜଣେ ଜଣାଶୁଣା ଲେଖକ ମରାଠୀର ଦଳିତ ସାହିତ୍ୟ ବିଷୟରେ ଲେଖିବାକୁ ଯାଇ ଏହାର ଅର୍ଥ ଅତି ନିକୃଷ୍ଟ ପ୍ରକାରର ସାହିତ୍ୟ ବୋଲି ଲେଖିଥିଲେ । 'ପୂର୍ବାସ୍ପୃଶ୍ୟ' ଶବ୍ଦ ମଧ୍ୟ, ମୋ ଜାଣିବାରେ, ପ୍ରଥମେ ମରାଠୀରେ ବ୍ୟବହାର ହେଲା, ୧୯୩୦ ଦଶକରେ (ସ୍ୱ) ୱିନାୟକ ଦାମୋଦର ସାଓ୍ୱରକରଂକ ଦ୍ୱାରା ।] ଗତ ତିରିଶ ବର୍ଷ ଭିତରେ ଦଳିତ ସାହିତ୍ୟ ମରାଠୀ ସାହିତ୍ୟରେ ଏକ ବିଶେଷ ସ୍ଥାନ ପାଇଚି । ଏବେ ସ୍ୱତଂତ୍ର ଦଳିତ ସାହିତ୍ୟ ସମ୍ମେଳନ ବି ହେଉଚି । ଅସଲ କଥା ହେଲା, ଦଳିତଂକ ଆତ୍ମଜୀବନୀ ଫଳରେ ସେ ସମାଜ ବିଷୟରେ ଅନ୍ୟମାନେ ଯେପରି ଜାଣିଲେ, ତାହା ଅନ୍ୟ କୌଣସି ସାହିତ୍ୟକୃତିରୁ ଏତେ ଉତ୍କଟ ଭାବରେ ଜାଣିବା ସଂଭବ ନଥିଲା ।

ମହାରାଷ୍ଟ୍ରରେ ଦଳିତ-ଆଦିବାସୀ ସମାଜର ଲୋକସଂଖ୍ୟା ମୋଟ ଲୋକସଂଖ୍ୟାର ଏକ-ଷଷ୍ଠାଂଶ ମାତ୍ର । ଓଡ଼ିଶାରେ ଦଳିତ ଓ ଆଦିବାସୀ ସମାଜର ଲୋକସଂଖ୍ୟା ମୋଟ ଲୋକସଂଖ୍ୟାର ପ୍ରାୟ ଦୁଇ-ପଂଚମାଂଶ । ମରାଠୀରେ ଦଳିତଂକ ଆତ୍ମଚରିତ ପଢ଼ିଲାବେଳେ ମତେ ଲାଗେ, ଆମ ଓଡ଼ିଶାରେ ଦଳିତ ଓ ଆଦିବାସୀ ସମାଜର ଏଡ଼େ ବିରାଟ ଜନସମୁଦାୟ ଥାଇ ମଧ୍ୟ, ଅନ୍ତତଃ ମୋ ଜାଣିବାରେ, (ସ୍ୱ) ମୋହନ ଦାସଂକ ଛଡ଼ା ଆଉ ଗଂଡ଼ିଏ ହେଲେ ଆତ୍ମଚରିତ କିଆଁ ନାଇଁ ? ଗୋପୀ ମହାଂତିଂକ ଭଳି ଯେତେ ହୃଦୟବାନ୍ ସବର୍ଣ ଲେଖକ

ହେଲେ ବି ତାଂକ ଲେଖା ଦଳିତ–ଆଦିବାସୀଙ୍କ ଘର ଭିତରକୁ ଖାଲି ଝରକା ବାଟେ ଚାହିଁଲା ଭଳି ।

ସାତ ବର୍ଷ ତଳେ ମୋ ପିତା ରାଧାନାଥ ରଥଙ୍କ ମୃତ୍ୟୁ ଘଟିଲା । ଓଡ଼ିଶାର ସର୍ବାଂଗୀଣ ଉନ୍ନତି ତାଂକ ଜୀବନର ପ୍ରଧାନ. ବୋଧହୁଏ ଏକମାତ୍ର. ଧ୍ୟେୟ ଥିଲା । ତେଣୁ. ମୋ ଢଂଗରେ ମୁଁ ତାଂକ ଶ୍ରାଦ୍ଧ ଓଡ଼ିଆ ସମାଜର ବିଚାରଧାରାରେ ଟିକିଏ ଉଦକ ଛାଡ଼ି ତା'ର ବୃଦ୍ଧିରେ ସାମାନ୍ୟ ସାହାଯ୍ୟ ମାର୍ଗରେ କରିବାକୁ ସ୍ଥିର କଲି । ଏଥିଲାଗି ପ୍ରତିବର୍ଷ କୌଣସି ଏକ ବିଶିଷ୍ଟ ବ୍ୟକ୍ତିଂକ ଦ୍ଵାରା ଏକ ଚିନ୍ତାଶୀଳ ଭାଷଣର ବ୍ୟବସ୍ଥା କରୁଥିବା ବେଳେ. ଦଳିତ ଓ ଆଦିବାସୀ ସମାଜର ସାଧାରଣ ସ୍ତ୍ରୀ ପୁରୁଷଙ୍କ ଆତ୍ମଚରିତ ପ୍ରକାଶ କରିବା କଥା ମୋ ମନକୁ ଆସିଲା । ଓଡ଼ିଶାର କେତେ ସାଂଗ ସାଥୀଙ୍କୁ ଏ ବାବଦରେ ମତେ ସାହାଯ୍ୟ କରିବାକୁ ଅନୁରୋଧ କଲି । ତାଂକ ସାହାଯ୍ୟରେ କେତେକଂକ ପାଖକୁ ଅନୁରୋଧ କରି ଚିଠି ଲେଖିଲି । କାହା କାହାଂକୁ ଦେଖାକରି ପ୍ରସ୍ତାବ ଦେଲି । ମାତ୍ର ଏ ଦିଗରେ ପ୍ରଗତି ହେଉ ନଥାଏ । ଏଇ ପରିସ୍ଥିତିରେ ଦି ବର୍ଷ ତଳେ ଶ୍ରୀ ଅଚ୍ୟୁତ ଦାସଂକ ସାହାଯ୍ୟରେ କାଶୀପୁରର ଜଣାଶୁଣା ଆଦିବାସୀ ମହିଳାକର୍ମୀ ଶ୍ରୀମତୀ ସୁମନୀ ଝୋଡ଼ିଆ ଲେଖିବାକୁ ରାଜି ହୋଇଥାଆଂତି । ମୁଁ ମୋର ଏ ଚେଷ୍ଟା ବିଷୟ କଟକରେ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଂକୁ କହିଲାରୁ ସେ ତାଂକ ପରିଚୟର ଦି ତିନି ଜଣ ପୂର୍ବାସ୍ପୃଶ୍ୟ ତଥା ଆଦିବାସୀ କର୍ମୀଂକ ନାଆଁ ସୂଚାଇଲେ । ମୁଁ ଅନ୍ନପୂର୍ଣ୍ଣା ଦେବୀଂକ ସୁପାରିଶ ସହିତ ଚିଠି ସେମାନଂକ ପାଖକୁ ପଠାଇଲି । ଆଗର କଟକ ଜିଲ୍ଲାର ପୂର୍ବାସ୍ପୃଶ୍ୟ ସମାଜର ଓ ଗତ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି କୋରାପୁଟର ଗ୍ରାମଦାନ ଅଂଚଳରେ କାର୍ଯରତ ଶ୍ରୀ ନିଶାକର ଦାସ ଲେଖିବାକୁ ରାଜି ହେଲେ । ନିଶାକରବାବୁ ଆଚାର ଓ ବିଚାରରେ ଜଣେ ଅନୁଶାସନପ୍ରିୟ ବ୍ୟକ୍ତି । ସେ ଦୁଇ କିସ୍ତିରେ ପଠାଇଥିବା ଲେଖାକୁ ଏବେ ପୁସ୍ତିକା ରୂପରେ ପ୍ରକାଶ କରାଯାଉଛି ।

ପୁସ୍ତକ ପ୍ରକାଶନ ମୋର ବେଉସା ନୁହେଁ । ମୁଁ ମୋ ପିତାଂକ ଶ୍ରାଦ୍ଧ ଲାଗି ଯେପରି ଗତ କେତେ ବର୍ଷ ନିଜ ଖର୍ଚ୍ଚରେ ରାଧାନାଥ ରଥ ସ୍ମାରକ ବ୍ୟାଖ୍ୟାନର ବ୍ୟବସ୍ଥା କରୁଥିଲି. ଏ ବର୍ଷ ସେହିଭଳି **ଏ ରାଧାନାଥ ରଥ ସ୍ମାରକ ପ୍ରକାଶନ** କରୁଅଛି । ଓଡ଼ିଶାର ସୁନାମଧନ୍ୟ ବିଚାରବଂତ ଲେଖକ ଅଧ୍ୟାପକ ଡ଼ଃ ଧନେଶ୍ଵର ମହାପାତ୍ର ଆନୁଷ୍ଠାନିକ ଭାବରେ ଏ ପୁସ୍ତକର ପ୍ରକାଶନ କରି ସେ ଉପଲକ୍ଷେ ସ୍ମାରକ ଭାଷଣ ଦେବାକୁ ରାଜି

ହୋଇଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ମୁଁ ବହିର ପ୍ରକାଶକ ହୋଇଥିଲେ ହେଁ, ଏ ବହି ବିତରଣର ସଂପୂର୍ଣ୍ଣ ଅଧିକାର ଭୁବନେଶ୍ୱରର ଶିକ୍ଷାସଂଧାନ ସଂସ୍ଥା ଗ୍ରହଣ କରିଚଂତି । ଏ ବହିର ବିକ୍ରୟଲବ୍ଧ ମୂଲ୍ୟକୁ ସେ ସଂସ୍ଥା ଏକ ସ୍ୱତଂତ୍ର ପାଂଠି ହିସାବରେ ରଖିବେ । ତହିଁରୁ ବିତରଣର ଖର୍ଚ୍ଚ ଯାଇ ଉଦ୍‌ବୃତ୍ତ ଅର୍ଥ ଭବିଷ୍ୟତରେ ଏ ପ୍ରକାରର ଦଳିତ–ଆଦିବାସୀ ଆତ୍ମଚରିତ ପ୍ରକାଶନରେ ଖର୍ଚ୍ଚ କରାଯିବ । ଶିକ୍ଷାସଂଧାନ ସେସବୁ ପ୍ରକାଶନର ପ୍ରକାଶକ ହେବାକୁ ମଧ୍ୟ ସମ୍ମତି ଦେଇଛଂତି ।

ନିଶାକର ବାବୁଂକ ସହିତ ମୋର ଯୋଗାଯୋଗ ସ୍ଥାପନ କରାଇ ତାଂକୁ ଏ ଦିଗରେ ପ୍ରୋତ୍ସାହିତ କରାଇ ଥିବାରୁ ମୁଁ ଚୁନିଅପାଂକ (ଅନ୍ନପୂର୍ଣ୍ଣା ମହାରଣାଂକ)ଠାରେ ଗଭୀର କୃତଜ୍ଞତା ଜ୍ଞାପନ କରୁଚି । ବହିର ପ୍ରଚ୍ଛଦପଟ ତିଆରି କରିଦେଇ ଥିବାରୁ ମୁଁ ପୁଣେସ୍ଥିତ ମୋର ତରୁଣ ସାଂଗ ଶ୍ରୀ ସୁଧୀରପଟେଲ୍‌ଂକଠାରେ କୃତଜ୍ଞ । ବହିଟିକୁ ଅତି ଅଳ୍ପ ସମୟ ଭିତରେ ଛପାଇ ଦେଇଥିବାରୁ ମୁଁ ସଂସାର ପ୍ରେସର ଶ୍ରୀମତୀ ଅନସୂୟା ନଂଦଂକ ପାଖରେ କୃତଜ୍ଞ ।

ମୋର ଆଶା ଓ ବିଶ୍ୱାସ, ଏ ପୁସ୍ତକର ପ୍ରକାଶନ ଏ ଦିଗରେ ଆଉ ଉପଯୁକ୍ତ ପୁସ୍ତକ ପ୍ରକାଶନର ବାଟ ଦେଖାଇ ଓଡ଼ିଆ ପାଠକଂକର ଆଦରର ପାତ୍ର ହେବ ।

ନୀଳକଂଠ ରଥ

ପୁଣେ, ୪୧୧୦୦୪

ଜାନୁଆରୀ ୧, ୨୦୦୫

# ଖରସୁଆଁରୁ କୁଲାବିରି

## ଖରସୁଆଁ କୂଳରେ

ମୋର ଜନ୍ମ ସିଂହପୁର ଗ୍ରାମ ଖରସୁଆଁ ନଈ କୂଳରେ, ମାର୍ଚ ମାସ ୨୦ ତାରିଖ, ୧୯୨୭ ମସିହାରେ । ମୋ ବାପାଂକ ନାଁ ଭାଇଗି ଦାସ, ମାଂ'କ ନାଁ ସର ଦେବୀ । ପାଣ ବୈଷ୍ଣବ କୁଳରେ ମୋର ଜନ୍ମ । ଆମ ବାପାଂକର ତିନି ଭାଇ: ଅଇଁଠି ଦାସ, କହ୍ନେଇ ଦାସ, ବେଂଗ ଦାସ ।  ମୋର ଜେଜେ ବାପା ତିନି ଭାଇ ଥିଲେ - ଜେଜେ ବାପା ରଂଗା ଦାସ, ମଣି ଦାସ, ଗଂଗା ଦାସ ।

ଆମର ପାରିବାରିକ ଧଂଦା ଥିଲା, ପାଣମାନଂକ ଘରେ ପୁରୋହିତ କାମ କରିବା - ତାଂକ ଘରେ ବିଭା, ଶୁଦ୍ଧି, ଶ୍ରାଦ୍ଧ, ଇତ୍ୟାଦି କାମ କରି ସେଥିରୁ କିଛି ଆୟ କରିବା ।  ଅଳ୍ପ କିଛି ଜମି ଥିଲା । ସେଥିରୁ କିଛି ଆୟ ମିଳେ । ତା ଛଡ଼ା, ମୂଲ ମଜୁରି ଲାଗି କୌଣସି ପ୍ରକାରେ ବଂଚୁ ।

ବାପାଂକ ଭାଇମାନେ ବିଭା ହୋଲାର ବର୍ଷକ ପରେ ଭିନ୍ନେ ହୋଇଗଲେ । ଆମର ଗୋଟିଏ ଖଂଜା ଘର ଥିଲା, ପାଂଚ ବଖରା । ଧାନ ଛଣରେ ଘର ଛପର ହେଉଥିଲା । ଚାରି ଭାଇ ଏ ଘରେ ରହୁଥିଲେ । ମୁଁ ମୋର ତିନି ଦାଦାଂକ ବାହାଘର ଦେଖିଚି । ଏ ଦାଦାମାନେ ପୁରୋହିତ କାମ କରି ଆଉ ମଜୁରି ଲାଗି ଚଳୁଥିଲେ । ମୁଁ ମୋର ସାନ ଜେଜେ ଗଂଗାଦାସଂକ ସାଂଗରେ ପାଲା ଦଳରେ ପାଲା ପାଳିଆ ହିସାବରେ ପାଲା ଗାଉଥିଲି । ଆମ ପାଣ ବୈଷ୍ଣବମାନେ ତୁଳସୀ ଗଛ ଓ ଅନ୍ୟ ଗୋଟିଏ ଗଛରୁ ମାଳି କାଟି ତାକୁ ରଂଗକରି ବିକି ସେଥିରୁ କିଛି ଅର୍ଥ ସଂଗ୍ରହ କରନ୍ତି । ବେପାରୀମାନେ ହାଟରେ ଓ ଆମ ଘରେ ଆସି ମାଳି କିଣି ନେଇ ଯାଆନ୍ତି । ସବର୍ଣମାନେ ମଧ୍ୟ ମାଳି କିଣି ନିଅନ୍ତି । ଆମ ପରିବାର ଭିତରେ ଦୁଃଖସୁଖରେ ପରସ୍ପର ଭିତରେ ସାହାଯ୍ୟ ହୁଅନ୍ତି । ଭାଇ ଭାଇ ଭିତରେ ମତାଂତର ଥିଲେ ବି ସ୍ନେହଶ୍ରଦ୍ଧାରେ ପରସ୍ପରକୁ ସାହାଯ୍ୟ ହୁଅନ୍ତି ।

ମୁଁ ସାନ ଥିଲାବେଳେ ମୋ ବୋଉ ନଈରୁ ଗାଧୋଇ ଆସି ଗୋଟିଏ ଛୋଟ ତାଟିଆରେ ଅଳ୍ପ ପାଣି ଧରି ଜେଜେବାପାଂକ ପାଖକୁ ଆସି ନମସ୍କାର କରି ତାଟିଆଟି ବଢ଼ାଇ ଦିଅନ୍ତି । ଜେଜେ ସେ ତାଟିଆରେ ନିଜ ବୁଢ଼ା ଆଂଗୁଠିଟି ବୁଡ଼ାଇ ଦିଅନ୍ତି । ମା ସେତକ ପାଣି ପିଇଦେଇ ରୋଷେଇ ଘରକୁ ଯାଇ କାମ ଆରଂଭ କରିବା ମୁଁ ନିଜ ଆଖିରେ ଦେଖିଚି । ଶାଶୂ ଶଶୁରଂକ ପ୍ରତି ବୋହୂମାନଂକର ଏପରି ଭକ୍ତି ସେତେବେଳେ ଥିବାର ମୁଁ ଦେଖିଚି ।

ସେତେବେଳେ ସମସ୍ତଂକ ଘରେ ମାଟି ହାଂଡ଼ିରେ ରଂଧା ହେଉଥିଲା । ପରଷିବାପାଇଁ ଗୋଟିଏ କଂସା ତାଟିଆ ଥାଏ । ତହିଁରେ ସବୁ ଘରେ ପଖାଳ ବାଢ଼ି ଦିଅନ୍ତି । ମୁଁ ଖୁବ୍ ସାନ ଥିଲାବେଳେ ମାଟିର ପରଷୁଣି ଥିଲା, ସେଥିରେ ମୁଁ ପଖାଳ ଭାତ ବାଢ଼ି ଖାଇଚି । ସେତେବେଳର ପଖାଳ ଭାତ ଏତେ ସୁଆଦ ଲାଗୁଥିଲା ଯେ ଖାଲି ଲୁଣ ଲଂକା ଲଗେଇ ଖାଇ ଯାଉଥିଲୁ । ସେତେବେଳେ ବଢ଼ି ପାଣିର ପଟୁମାଟି ବିଲରେ ପଡ଼ି ସେ ଉର୍ବର ଜମିରୁ ସୁସ୍ବାଦୁ ଶସ୍ୟର ଉତ୍ପାଦନ ହେଉଥିଲା । ତାକୁ ଖାଇ ସେ ସମୟର ଲୋକେ କେତେ ସୁସ୍ଥ ସବଳ ଥିଲେ । ଏବେ ସାରଦିଆ ଖାଦ୍ୟ ଖାଇ ନାନାପ୍ରକାର ଅସାଧ୍ୟ ରୋଗରେ ପଡ଼ି ଅକାଳରେ ମୃତ୍ୟୁ ହେଉଚି ।

ଆମ ବୈଷ୍ଣବମାନେ ପାଣ ଘରେ ପୁରୋହିତ କାମ କରିବାକୁ ଗଲେ ତାଂକ ଘରେ ରଂଧାଯିବା ଖାଦ୍ୟ ଖାଆଂତି ନାହିଁ । ନୂଆ ଆଟିକାରେ ନିଜେ ରାଂଧି ଖାଆଂତି । ସେତେବେଳେ ଡ଼େକ୍‌ଚି ଇତ୍ୟାଦି ନଥିଲା । ପିତଳର ଛୋଟ ଆଟିକା ଥିଲେ ସେଥିରେ ନିଜେ ରାଂଧି ଖାଆଂତି । ମୁଁ ନିଜେ ପୁରୋହିତ କାମ କରିଚି ଓ ନୂଆ ଆଟିକାରେ ରାଂଧି ଖାଇଚି ।

ସବର୍ଣ୍ଣଂକ ବିଭା ବ୍ରତଘରରେ ଆମ ପାଣ ବୈଷ୍ଣବଂକ ଭିତରୁ କେହି ଯାଇ ତାଂକ ଘରେ ଖାଆଂତି ନାହିଁ । କାରଣ, ଛେଳି, କୁକୁଡ଼ା ଆଦି ମାଂସ ବୈଷ୍ଣବମାନେ ଖାଆଂତି ନାହିଁ । ଯେ ଖାଆଂତି, ତାଂକ ଘରେ ବା ତାଂକ ରଂଧାରେ ଅନ୍ୟ ବୈଷ୍ଣବ ଖାଆଂତି ନାହିଁ । ତାଂକୁ ଘୃଣା କରନ୍ତି । ବୈଷ୍ଣବ କେବଳ ମାଛ, ଶୁଖୁଆ ଖାଆଂତି । ମୁଁ ମୋ ଜୀବନରେ ଅଂଡ଼ା ବା କୌଣସି ମାଂସ ଖାଇନାହିଁ । କେବଳ ମାଛ, ଶୁଖୁଆ ଖାଏ । ପିଲାବେଳେ ଘରେ ଥିଲାବେଳେ ପିଂକା, ବିଡ଼ି, ପାନ, ଚୂନ, ଦୋକତା, ଇତ୍ୟାଦି ମୁଁ ଖାଉଥିଲି । ଗାଁ ଲୋକଂକ ସାଂଗରେ ପଡ଼ି ଏ ସବୁର ଅଭ୍ୟାସ ହୋଇଯାଇଥିଲା । ଏମିତିକି, ପାନ ବଟୁଆ

ରଖି ପାନ ଖାଉଥିଲି । ଆଶ୍ରମରେ ରହି, ସର୍ବୋଦୟ ନେତାଂକ ସାଂଗରେ ମିଶି ଏ ସବୁ କୁଅଭ୍ୟାସ ଛାଡ଼ିଦେଲି । ଜୀବନରେ ଚାହା କି କଫି ଏ ଯାଏଁ ପିଇନାହିଁ । ମଦ, ହାଂଡ଼ିଆ, ସଳପ, ଗଂଜେଇ ଇତ୍ୟାଦି ନିଶା ପଦାର୍ଥ ମୋଟେ ଖାଇ ନାହିଁ । ଏ ଆଦିବାସୀ ଅଂଚଳରେ (କୋରାପୁଟରେ) ନିଶାମୁକ୍ତି ଆଂଦୋଳନରେ ଶହ ଶହ ମଦଭାଟି ଭାଂଗିଚି, ବହୁତ ମଦ ଭୂଇଁ ଉପରେ ଢାଳି ଦେଇଚି । ଗୁମିଗୁଡ଼ା କଂଧ ଆଦିବାସୀ ଗାଁରେ ଥରେ ଶାଂତିସେନା ଓ ଗାଁର ଯୁବକମାନଂକୁ ନେଇ ମଦ ଭାଟି ଭାଂଗିଦେଲୁ । ବଡ଼ ଡେଲ ଡ଼ବାରେ କୋଡ଼ିଏ ଡ଼ବା ମଦ ରଖାଯାଇଥାଏ । ସେ ମଦକୁ ତଳେ ଢ଼ାଳି ଦେବାରୁ ତା ବୋହିଯିବା ଦେଖି ସେ ଗାଁର କେତେ ମଦୁଆ ଆଦିବାସୀ ଭୂଇଁରେ ଆଂଠେଇ ପଡ଼ି ବୋହିଯାଉଥିବା ମଦକୁ ପିଇ ଯାଉଥିବାର ଦେଖିଲୁ । କୋରାପୁଟ ଜିଲ୍ଲାରେ ମଦ ରଂଧାରେ ପୁଲିସ ଓ ଏକ୍‌ସାଇଜ୍ ବିଭାଗଂକ ପରାମର୍ଶ ଓ ପ୍ରରୋଚନାରେ ଆଦିବାସୀ ଓ ହରିଜନମାନେ ମଦ ରାଂଧତି । ମାସକୁ ମାସ ଭାଟି ଦେଖି ଚାରିଶହ, ପାଂଚଶହ ବା ଅଧିକ ଟଂକା ଏ ବିଭାଗର ମୁଖ୍ୟକୁ ନୁଚା ଚୋରାରେ ଦିଅଂତି । ତୁ ତ ମୁତୁରୀ ମୁଁ ତ ମୁତୁରୀ ହେଁସ କାହିଁ ପାଇଁ ଧୋଇବା ନୀତିରେ ଏ କାର୍ଯ ଚାଲେ ।

ଆମ ଘର ଖରସୁଆଁ ନଈ କୂଳରେ ହୋଇଥିବାରୁ ବର୍ଷାଦିନରେ ନଇପାଣି ପଟୁମାଟି ମିଶି ଗୋଳିଆ ହୋଇଯାଉଥିବାରୁ ଓ ନଈ ସ୍ରୋତରେ ମଲା ମଣିଷ, ଗୋରୁ ଗାଈ ଇତ୍ୟାଦି ଭାସି ଯାଉଥିବା ଦେଖି, ନଇକୂଳର ସବୁ ଲୋକ ସେଇ ଗୋଳିଆ ପଟୁମିଶା ପାଣି ମାଠିଆ, ଗରିଆ ଇତ୍ୟାଦିରେ ରଖି ଥଂଡ଼ାକରି ପଟୁ ବସିଗଲେ ତାକୁ ପିଅଂତି ଓ ଭାତ ରାଂଧି ଖାଆଂତି । ମୁଁ ମଧ୍ୟ ସେଇ ପାଣିକୁ ପିଉଥିଲି । ମୁଁ ସର୍ବୋଦୟରେ ମିଶି କଲ୍ୟାଣପୁର ଆଶ୍ରମରେ ରହି କୂଅ ପାଣି ପିଇବାରୁ ନଇପାଣି ପ୍ରତି ଘୃଣା ଭାବ ଆସିଲା । ପିଲାଦିନେ ଆମ ଘର ପାଖରେ ଏକ ସବର୍ଣ ପରିବାରଂକ କୂଅ ଥିଲା । ମୁଁ ତାଂକ କୂଅକୁ ପାଣି ଆଣିବାକୁ ଯାଉଥିଲି । ସେମାନେ ମତେ ତାଂକ କୂଅକୁ ଛୁଆଁଇ ଦେଉନଥିଲେ । ସେ ନିଜେ କୂଅରୁ ପାଣି କାଢି ଆମ ଗରିଆ କିଂବା ମାଠିଆରେ ଢାଳି ଦିଅନ୍ତି । ସେ ପାଣି ଆଣି ପିଉଥିଲୁ ଓ ସେଥିରେ ରାଂଧୁଥିଲୁ । ସେତେବେଳେ ଖୁବ୍ କମ୍ ଲୋକଂକ ଘରେ କୂଅ ଥିଲା ଓ ଖୁବ୍ କମ୍ ଲୋକ କୂଅପାଣି ବ୍ୟବହାର କରୁଥିଲେ ।

ସେତେବେଳେ ପାରିବାରିକ ଭାବନା ଭଲ ଥିଲା । ଛୁଆଁ ଅଛୁଆଁ ଭାବ ଥିଲେ ମଧ୍ୟ ସମସ୍ତେ ସ୍ନେହ ଶ୍ରଦ୍ଧାରେ ଚଳି ଯାଉଥିଲେ । ସାଇପଡ଼ିଶା ଭାବନା ବେଶ୍ ଭଲ

ଥିଲା । କୌଣସି ଗଂଡ଼ଗୋଳ ହେଲେ ଗାଁରେ ବସି ନିଶାପ କରି ତୁଟାଇ ଦେଉଥିଲେ । ଗାଁ ମୁଖିଆଂକୁ ସମସ୍ତେ ମାନି ଚଳୁଥିଲେ ।

ଆମ ବୈଷ୍ଣବ ଘର ପାଖାପାଖି କେତେଘର କଂଡ଼ରା ହରିଜନ ଘର ଥିଲା । ତାଂକ ସାଂଗରେ ମଧ୍ୟ ଆମର ପଡ଼ୋଶି ଭାବନା ଥିଲା । ପାଣ, କଂଡ଼ରା ଛୁଆଁ ଛୁଇଁ ହୋଇଗଲେ ଛୁଆଁ ହୋଇଗଲୁ ବୋଲି ଉଭୟ ଗାଧୋଉଥିଲେ । ଏ ପ୍ରକାର ଧାରଣା ସେତେବେଳେ ଥିଲା । ଏବେ ପାଣ, କଂଡ଼ରା, ଗୋଖା, ବାଉରୀ, ସବର୍ଣ୍ଣଂକ ମନରୁ ଏ ଧାରଣା ଉଠିଗଲାଣି । କେବଳ ଘର ଭିତରେ ଛୁଆଁ ଛୁତ ଭାବ ଅଛି ଓ ତା ବଳବତ୍ତର ହେବାରେ ଲାଗିଚି ।

ଆମ ବୈଷ୍ଣବ ସାହି ଠାରୁ ପାଣ ସାହି ଅଧ କିଲୋମିଟର ଦୂରରେ ଥିଲା । ପାଣ ସାହିରେ ତିରିଶ ଘର ଯାଏ ଥିଲେ । ସମସ୍ତେ ଭୂମିହୀନ । କେବଳ ଦୁଇ ଘର ପାଣ ବଳଦ ହଳେ ଲେଖା ରଖି ସବର୍ଣ୍ଣଂକ ବିଲ ଭାଗରେ ଚାଷକରି ଫସଲ ଦି ଭାଗ କରି ଭାଗେ ଆଣୁଥିଲେ । ପାଣ କଂଡ଼ରା ମାଇପେ ସବର୍ଣ୍ଣଂକ ଘରେ ମଜୁରି ଲାଗନ୍ତି, ଗାଇ ଗୁହାଳ ସଫା କରନ୍ତି ।

ଆମ ଗାଁରେ ଗୋଟିଏ ଜାଗାରେ ପାଣ କଂଡ଼ରା ହରିଜନ ସାହି ପାଖାପାଖି ଥିଲା, ଅନ୍ୟ ଜାଗାରେ କଂଡ଼ରା ସାହି ଦୁଇ-ତିନି କିଲୋମିଟର୍ ଦୂରରେ ଥିଲା । ଆମ ବୈଷ୍ଣବ ସାହି ପାଖାପାଖି ଗୁଡ଼ିଆ ଘର, ତା ପାଖକୁ ଖଂଡ଼ାୟତ ଘର ଓ ବ୍ରାହ୍ମଣ ଘର ଥିଲା । ଆଉ ଅଧ କିଲୋମିଟର ଦୂରରେ ଗାଁ ଥିଲା । ଆମ ସିଂହପୁର ଗାଁ ଗୋଟିଏ ଗ୍ରାମ ପଂଚାୟତ । ଗାଁରେ ଗାଢି, ଗୁଡ଼ିଆ, ତେଲୀ, ତନ୍ତୀ, ଧୋବା, ଖଂଡ଼ାୟତ, ବ୍ରାହ୍ମଣ ଇତ୍ୟାଦି ରହୁଥିଲେ । ନଇ କୂଳେ କୂଳେ ଗାଁ । ଗାଁ ମଝିରେ ଦାଂଡ଼, ଦି ପଟେ ଲାଗି ଲାଗି ଘର କରି ଲୋକ ରହନ୍ତି । ମାଟି ଦାଂଡ଼, ଖରାଦିନେ ଶୁଖିଲା, ବର୍ଷାଦିନେ କାଦୁଅ । ଆମ ପରିବାରର ଗୋଟିଏ ଖଂଜା ଘର ଥିଲା ଓ ଗୋଟିଏ ଲମ୍ବା ଘର । ଚାରି ଭାଇ ଏ ଘରେ ଗୋଟିଏ ଗୋଟିଏ ବଖରାରେ ରହୁଥିଲେ । ଧାନ ଛଣରେ ଘର ଛପର ହୁଏ । ଆମର ଅଳ୍ପ ଜମିକି ଚାଷ କରି ସେଥିରୁ ଯାହା ଛଣ ଯୋଗାଡ଼ କରାଯାଏ । ତା ବାଦ୍ ମୂଲ ମଜୁରି କରି ତହିଁରୁ କିଛି ଛଣ କିଣା ହୁଏ । କୌଣସି ବର୍ଷ ଛପର କରି ନପାରିଲେ ପାଣି ଗଳେ, ବର୍ଷାଦିନରେ ତିଂତିକରି ଚଳିବାକୁ ପଡ଼େ । ଯେଝା ଘର ଯିଏ ଛପର କରନ୍ତି । ମୋ ପିଲାଦିନେ ଦି ତିନି ବର୍ଷ ଛପର ନହେବାରୁ ଘର ଭିତରେ ତିଂତି ରହିବାର ମୋର ମନେ ଅଛି ।

ଆମ ଜେଜେବାପାଂକର ଯେତେ ପାଣ ଯଜମାନ ଥିଲେ, ତାଂକୁ ଚାରି ପୁଅଂକ ଭିତରେ ବାଂଟି ଦେଇଥିଲେ। ଯେଝା ଯଜମାନଂକ କାମ ଯିଏ କରଂତି। ସେଥିରୁ ଯତ୍କିଂଚିତ୍ ଆୟରୁ ଚଳଂତି।

ପାଣ ବୈଷ୍ଣବଂକ ପୁଅ ଝିଅଂକ ବାହାଘର କେବଳ ପାଣ ବୈଷ୍ଣବଂକ ଘରେ ହୁଏ। ଓଡ଼ିଶାରେ ପ୍ରାୟ ତିନି ହଜାର ଘର ପାଣ ବୈଷ୍ଣବ କଟକ, କେଂଦ୍ରାପଡ଼ା, ଯାଜପୁର, ଭଦ୍ରଖ, ବାଲେଶ୍ୱର, କେଉଁଝର ଜିଲ୍ଲାମାନଂକରେ ଅଛଂତି। ତାଂକ ଭିତରର ବିଭା, ଶୁଦ୍ଧି ଇତ୍ୟାଦି କାର୍ଯ କେବଳ ତାଂକ ଭିତରେ ଦୂରଦୂରାଂତରରୁ ଆସି ହୁଏ। ପାଣ ବୈଷ୍ଣବ, କଂଡ଼ରା ବୈଷ୍ଣବ, ଗୋଖା ବୈଷ୍ଣବ, ଧୋବା ବୈଷ୍ଣବ, ବାଉରୀ ବୈଷ୍ଣବ ସମସ୍ତେ ହରିଜନ। ସ୍ୱାଧୀନତାପରେ ଯେଉଁମାନେ ଭଲ ପାଠ ପଢ଼ିଲେ ସେମାନଂକୁ ସରକାର ହରିଜନ ବୋଲି ଚାକିରୀ ଦେଲେ। ଥରେ ଜଣେ ପାଣ ବୈଷ୍ଣବ ଯୁବକ ଯାଜପୁରର ତହସିଲଦାରଂକୁ ଜାତି ସାର୍ଟିଫିକେଟ୍ ପାଇଁ ଦରଖାସ୍ତ କରିବାରୁ ସେ ହରିଜନ ତାଲିକା ଦେଖି କହିଲେ, ପାଣ ବୈଷ୍ଣବ ହରିଜନ ତାଲିକାରେ ନାହିଁ, ତେଣୁ ତମକୁ ସାର୍ଟିଫିକେଟ୍ ଦିଆଯାଇପାରିବ ନାହିଁ। ସାରା ଓଡ଼ିଶାରେ ଏପରି ହେବାରୁ, ପାଣ ବୈଷ୍ଣବ ପିଲେ ଯେତେ ପାଠ ପଢ଼ିଲେ ବି ତାଂକୁ ସହଜରେ ଚାକିରି ମିଳିଲା ନାହିଁ। ଆଗରୁ ଯେଉଁ ପାଣ ବୈଷ୍ଣବମାନେ ଚାକିରି ପାଇଥିଲେ ସେମାନଂକ ଉପରେ ଏବେ ଭିଜିଲେନ୍ସ୍ କେସ୍ ଚାଲିଚି। ତେଣେ ପାଣ ବୈଷ୍ଣବମାନେ ଆମକୁ ହରିଜନ ତାଲିକାରେ ରଖାଯାଉ ବୋଲି ହାଇକୋର୍ଟରେ ମକଦମା କରିଚଂତି। ଫଳରେ ଚାକିରି କାହାରିକୁ ମିଳୁନାହିଁ। ପୂର୍ବତନ ସାଂସଦ ଶ୍ରୀ ଅନାଦି ଚରଣ ଦାସ ଜଣେ ପାଣ ବୈଷ୍ଣବ। ସେ ମୋ ଦାଦାଂକ ପୁଅ, ମୋ ସାନ ଭାଇ। ପାଂଚଥର ସେ ସାଂସଦ ହୋଇଛି। ସେ ମଧ୍ୟ ଏ ଦିଗରେ କିଛି କରି ନପାରି, ହାଇକୋର୍ଟରେ ମକଦମା କରିବାକୁ ପରାମର୍ଶ ଦେଲା। ହାଇକୋର୍ଟ ମକଦମା ଚାଲିଚି, ଫଇସଲା ହୋଇନାହିଁ।

## ପିଲାଦିନ

ମୋତେ ପାଁଚ ବର୍ଷ ହୋଇଥିଲା ମୋର ବାପା ହଠାତ୍ ହାର୍ଟ୍ ଫେଲ୍ ହୋଇ ମରିଗଲେ। ଆମେ ତିନି ଭାଇ: ବଡ଼ଭାଇ ଦିଗମ୍ବର ଦାସ, ମଝିଆଁ ଭାଇ ଭାସ୍କର ଦାସ ଓ

ମୁଁ ସାନ । ଆମ ବାପା ମରିଯିବା ଆଗରୁ ଭାଇମାନଂକ ଠାରୁ ଭିନ୍ନେ ହୋଇ ଯାଇଥିଲେ । ମୋ ବଡ଼ଭାଇ ପାଣମାନଂକ ଘରେ ପୁରୋହିତ କାମକରି, ମୂଲ ମଜୁରି ଲାଗି ଆମମାନଂକୁ ଚଳାଇଲେ । ଆମକୁ ବଡ଼ ଦୁଃଖରେ, ବେଳେ ବେଳେ ଲୁଣ ମରିଚ ସାଂଗରେ ଅଳ୍ପ ଭାତ ଆଉ ପଖାଳ ତୋରାଣି ପେଟେ ପିଇ, ଦିନ କଟାଇବାକୁ ପଡୁଥିଲା । ସକାଳେ ପଖାଳ ଭାତ, ଗାଧୁଆ ବେଳେ ପଖାଳ ଭାତ, ରାତିରେ ଗରମ ଭାତ, ବେଳେ ବେଳେ ପିଠା ଖାଇବାକୁ ପଡ଼େ । ଆମେ ତିନି ଭାଇ ରୋଜଗାରକ୍ଷମ ହେଲାରୁ ଏ ଦୁଃଖ ଘୁଂଚିଗଲା । ପଖାଳ ଭାତରେ ଲୁଣ, ଲଂକା, କେବେ ଶାଗ ଭଜା, ଶୁଖୁଆ ପୋଡ଼ା ବି ଖାଉଥିଲୁ ।

ବାପା ଥିଲାବେଳେ ପାଣଂକ ଘରେ ବିଭା, ଶୁଦ୍ଧି, ଶ୍ରାଦ୍ଧ ଇତ୍ୟାଦି କାର୍ଯ କଲେ ବା ଚୁଡ଼ାଦହି ନାମସଂକୀର୍ତନ କଲେ ଚାଉଳ ତିନି-ଚାରି ଗୌଣୀ, ଚୁଡ଼ା, ମୁଢ଼ି, ଜୁତୁଂବ ସବୁ ଏତେ ଆଣଂତି ଯେ ଆମେ ଖାଇଲେ ସରେ ନି । ଗାଇଗୋରୁଂକୁ ମଧ୍ୟ ସମୟେ ସମୟେ ଦେବାକୁ ପଡ଼େ । ସେତେବେଳେ ଏ କାମରୁ ଦି ତିନି ଟଂକା ମିଳୁଥିଲା । ବାପା ଗଲା ପରେ ବଡ଼ଭାଇ ଓ ମୁଁ ପୁରୋହିତି କରୁଥିବାବେଳେ କାର୍ଯ ଦେଖି ଚାଉଳ ତିନିଚାରି ଗୌଣୀ ଓ ଚାରିପାଁଚ ଟଂକା ମିଳୁଥିଲା । ସଚଳିଆ ଯଜମାନ ହୋଇଥିଲେ ଅଧିକ ଦିଅଂତି । ବାପା ବି ପୁରୋହିତ କାମକରି ବିଲରେ ମଜୁରି ଲାଗିବାକୁ ଯାଆଂତି । ଗାଁରେ ଯେଉଁ ସବର୍ଣ ଛୁଆଁଛୁତି ବ୍ୟବହାର କମ୍ କରଂତି, ବାପା ସେଇମାନଂକ ବିଲରେ ବଛା କାମ, ଖଳା କାମ କରଂତି । ଭାଇ ଓ ମୁଁ ମଧ୍ୟ ଟିକିଏ ବଡ଼ ହେଲା ପରେ ମଜୁରି କାମ କରୁଥିଲୁ । ଧାନ ଦି ଗୌଣୀ ଓ ଦି ଅଣା ମଜୁରି ମିଳୁଥିଲା । ବାପା ଯିବା ପରେ ବଡ଼ଭାଇ ମଜୁରି ଲାଗୁଥିଲେ । ପୁଷ ମାସରେ ମା ନଇ ସେପାରିକି ବିରି ଉପାଡ଼ିବାକୁ ଯାଆଂତି । ମୁଁ ବେଳେବେଳେ କାଂଦିକାଂଦି ମା ସାଂଗରେ ଯାଉଥିଲି । ଚାଷୀ ମଜୁରିରେ ବିରି ଗଛ ଦିଅଂତି । ତାକୁ ଶୁଖାଇ, ଅମଳ କରି ଡ଼ାଲି ବା ପିଠା କରି ଖାଇବାକୁ ହୁଏ । ମା ଆମ ଗାଁରେ କେବେ ବିଲରେ ମୂଲ ମଜୁରି ଲାଗିଯାଇନି । ବର୍ଷା ଦିନରେ ମା ଗାଁ ବିଲରୁ କୁଲାରେ ଝାଡ଼ି ସୁଆଁ ଆଣଂତି । କଳଂବ ଶାଗ, ମଦରଂଗା ଶାଗ ବିଲରୁ ତୋଳି ଆଣଂତି । ଗାଁର ଜଣେ ସବର୍ଣଂକ ଘରୁ ବଡ଼ଭାଇ ଗୋଟିଏ ଗାଇ ଅଧିଆରୀରେ ଆଣିଲେ । ମା ବିଲରୁ ଘାସ କାଟି ଆଣି ଗାଇକୁ ଦିଅଂତି । ଦୁଧ, ଦହି, ଘିଅ ବିକି କିଛି ଆୟ ମିଳେ ।

ପୁଷ, ମାଘ, ଫଗୁଣ, ଚଇତ ମାସ ଯାଏ ଭଲ ରୋଜଗାର ମିଳେ ଓ ବୈଶାଖ, ଜ୍ୟେଷ୍ଠ ଯାଏ ଭଲରେ ଚଳିଯାଉ । ଆଷାଢ଼ ମାସଠାରୁ ମଗୁଶିର ମାସ ଯାଏ ବର୍ଷା, ବନ୍ୟା

ଯୋଗୁଁ ଚଳିବା ଭାରି କଷ୍ଟକର ହୁଏ । ବିଲବାଡ଼ି ପାଣିରେ ବୁଡ଼ିଯିବା ଫଳରେ ମଜୁରିରେ କାମ ମିଳେ ନାହିଁ । ଗରିବ ପରିବାରଂକୁ ଚଳିବା ବଡ଼ କଷ୍ଟ । ବନ୍ୟାରେ ପାଣିଘେରରେ ରହିବାକୁ ପଡ଼େ । ଡ଼ଂଗା ସମସ୍ତଂକର ନଥାଏ । ଦୋକାନ ଗାଁ ମଝିରେ । ରାସ୍ତାଘାଟରେ ବଢିପାଣିର ସୁଅ ଛୁଟେ । ଘରଡ଼ିହରେ ହିଁ ରହିବାକୁ ପଡ଼େ । ଅଂଟେ ପାଣିରେ ନଇଁକରି ଝାଡ଼ା ଯିବାକୁ ପଡ଼େ । ମୋର ମନେ ଅଛି, ଥରେ ବନ୍ୟା ଘେରରେ ଦଶଦିନ ଭୋକଉପାସରେ ରହିଲାପରେ ଗାଁର ଜଣେ ଧନୀ ସାହୁ ଗରିବଲୋକଂକୁ ଚାଉଳ ଦୁଇତିନି ସେର ଲେଖାଁ ଦେଇଥିଲେ । ମୋ ବଡ଼ ଓ ମଝିଆଁ ଭାଇ ଭଲ ପହଁରି ଜାଣି ନଥିଲେ । ମୁଁ ପହଁରି କରି ଗାଁର ସାଇ ପଡ଼ିଶା ଲୋକଂକ ସାଂଗରେ ଯାଇ ଚାଉଳ ଆଣିଥିଲି । ବନ୍ୟା ଛାଡ଼ିଗଲେ ମଧ୍ୟ ଖାଲ ଢିପ, କେଉଁଠି ଅଂଟାଏ, କେଉଁଠି ଜଂଘେ, କେଉଁଠି ଆଂଠୁଏ ପାଣିରେ ପଶି ମଜୁରିରେ ବିଲ ବାଛିବାକୁ ଯିବାକୁ ପଡ଼େ । ନଇକୂଳିଆ ଗ୍ରାମବାସୀ ଓ ବିଲ ମଝିରେ ଥିବା ଗ୍ରାମବାସୀ ବଢ଼ିବେଳେ ବହୁତ କଷ୍ଟରେ ଦିନ କାଟଂତି । ଏବେ ନଇକୂଳରେ ବଂଧ ଓ ରାସ୍ତା ହୋଇଯିବାରୁ ଆଉ ସେ ଦୁଃଖ ନାହିଁ । ଖାଲି ବିପଦାପନ୍ନ ଗାଁମାନଂକରେ ବଢିପାଣି ବଂଧ ଉପରକୁ ଉଠିଲେ ବଂଧ ଭାଂଗିବା ଡ଼ରରେ ଲୋକେ ରାତି ଶୋଉ ନାହାଂତି । ସାଇର ଲୋକେ ରାତିରେ ବୁଲି ବୁଲି ପାଣି କେତେ ଉପରକୁ ଉଠିଲା, ବଂଧ କେଉଁଠି ଦୁର୍ବଳ ଅଛି, ଦେଖିବାକୁ ପଡୁଚି । କାରଣ, ଆମ ପିଲାଦିନେ ଖରସୁଆଁ ନଇ ଯେତେ ଗଭୀର ଥିଲା, ଏବେ ତା'ର ତିନି ଭାଗରୁ ଭାଗେ ବାଲିରେ ପୋତିହୋଇ ଗଲାଣି ।

ବଡ଼ଭାଇ ମୋତେ ଓ ମଝିଆଁ ଭାଇକି ଜଣେ ଅବଧାନଂକ ପାଖରେ ପାଠ ପଢ଼ିବାକୁ ପଠେଇଲେ । ତାଂକୁ ଘରେ ବାପା ଦାଦାମାନେ ପଢାଇଥିଲେ ଯେ ସେ କେବଳ ବହି ପୋଥି ଭାଗବତ ପଢି ପାରୁଥିଲେ । ଆମେ ମୋଟା ମୋଟା ମାଟି ଖଡ଼ିରେ ତଳେ ମାଟିରେ ଅ, ଆ ଇତ୍ୟାଦି ଅକ୍ଷରମାନ ଲେଖିଶିଖିଲୁ । ପରେ ଗାଁରେ ସ୍କୁଲ୍ ହେବାରୁ ସେଠାରେ ପଢିବାକୁ ଗଲୁ । ପାଣ କଂଡ଼ରା ସାହିର କେହି ପିଲା ସେତେବେଳେ ପଢୁ ନଥିଲେ । ଚାଟଶାଳୀରେ ଦି ବର୍ଷ ପଢି ତା ପରେ ସ୍କୁଲ୍‌ରେ ପଢିବାକୁ ଗଲାରୁ ଅଧିକ ସମୟ ଲାଗିଲା । ଭାଇ ଅବଧାନଂକୁ କିଛି କିଛି ପାଉଣା ଦେଉଥିଲେ । ଗାଁ ସ୍କୁଲ୍‌ରେ ମଧ୍ୟ କିଛି ପାଉଣା ଦେବାକୁ ପଡୁଥାଏ । ବହି ଇତ୍ୟାଦି କିଣିକରି ଦେବାକୁ ପଡୁଥାଏ ।

ଦାଦା-ମା-ଭାଇମାନେ ତାଂକ ରୋଜଗାରରୁ କିଛି କିଛି ଟଂକା ମାଷ୍ଟ୍ରଙ୍କୁ ଦେଇ ମତେ ପାଠ ପଢେଇ ଥିଲେ ।

ମୁଁ ପିଲାଦିନେ ବେଶ୍ ଚଗଲା ଥିଲି । ପାଠପଢ଼ାରେ ମନ ନଦେଇ ଶିକ୍ଷକଂକୁ ଠକିଦେଇ ବଡ଼ପାସ୍ କହି ଘରକୁ ନଯାଇ ନଇ କୂଳେକୂଳେ କେତେକ ସାଂଗ ପିଲାଂକ ସାଂଗରେ ଖେଳୁଖେଳୁ ଦାଦା ଭାଇ ଦେଖି ମାଡ଼ମାରିବା ଡ଼ରରେ କିଆବଣରେ ଲୁଚି ଯାଉଥିଲି । ବିଲରେ ଚାଷୀ ଚଣା ବୁଣନ୍ତି । ଚଣା ପାକଳ ହୋଇଗଲେ, ସାଂଗ ପିଲାଂକ ସାଂଗରେ ଲୁଚି ଲୁଚି କିଆବୁଦା ମୂଳେ ରହିଥିବୁ, ଚାଷୀ ଘରକୁ ଗଲେ ଚଣା ବିଲରୁ ଓପାଡ଼ିକରି ଆଣି ଦୂର ଜାଗାରେ ପୋଡ଼ି ଖାଉଥିଲୁ । ମଝିଆଁ ଭାଇକି କହିକରି ଆସିଥାଏ, ସେ ମୋ ବହି ସିଲଟ ଘରକୁ ଆଣେ । ବେଳେ ବେଳେ ମାଡ଼ଗାଳି ଖାଏ । ଥରେ ଏପରି ଲୁଚିକରି ଆସି ରାସ୍ତା କଡ଼ ବରଗଛ ଉପରେ ଚଢ଼ି ଖେଳୁଥିଲି, ଆମ ହେଡ୍‌ମାଷ୍ଟର୍ ଦାଶରଥୀ ସାର୍ ତାଂକ ଗାଁରୁ ସେଇ ବାଟ ଦେଇ ଆସୁଥିଲେ । ମୋ ସାଂଗ ପିଲେ ଓ କେତେକ ଗାଁଲୋକ ତାଂକୁ କହିଲେ, ସାର୍, ନିଶାକର ଏଇ ବରଗଛରେ ଚଢ଼ିଚି । ମୁଁ ସାଂଗେ ସାଂଗେ ବରଗଛ ଡ଼ାଳରୁ ଡ଼େଇଁ ପଳେଇ ଯିବାକୁ ଚେଷ୍ଟା କଲି । ମାତ୍ର, ହେଡ୍‌ମାଷ୍ଟର୍ ଗଛକୁ ଅନେଇ ଦେଖିଲେ ମୁଁ ଡ଼ାଳରେ ବସିଚି । ମତେ କହିଲେ, ଗଛରୁ ଓହ୍ଲେଇ ଆସ୍ । ସେ ସାର୍ ବେଶି ମାରନ୍ତି । ତାଂକ କହିବା ଅନୁସାରେ ମୁଁ ଗଛରୁ ଓହ୍ଲେଇ ଆସିଲି । ମତେ ସ୍କୁଲ୍‌କୁ ନେଇ ବହୁତ ମାଡ଼ ଦେଇ ସ୍କୁଲ୍ ଘର ଭିତରେ ମତେ ରଖି ତାଲା ପକାଇଦେଲେ । ସ୍କୁଲ୍ ଛୁଟି ହେଲା, ପିଲାମାନେ ଘରକୁ ଗଲେ, ମୁଁ ସ୍କୁଲ୍ ଘର ଭିତରେ କାଂଦୁଥାଏ । ବଡ଼ଭାଇ ଆସି ହେଡ୍‌ସାରଂକୁ କହି ମତେ ରାତି ସାତଟାରେ ଘରକୁ ଆଣିଲେ ।

କାଉ ତାଳ ଗଛରେ ବସା କରି ପିଲାଂକୁ ରଖି ଆହାର ଆଣିବା ପାଇଁ ଯାଇଥାଆଂତି । ସାଂଗ ପାଲାଂକୁ ଧରି ଲମ୍ବା ବାଉଁଶରେ କାଉ ବସାକୁ ଖେଁଚି କାଉପିଲାଂକୁ ଆଣି ବଳି ପକାଉଥିଲି । କାଉ ଆମକୁ ଗୋଡ଼େଇ ଗୋଡ଼େଇ ଖୁଂପଂତି । ଏମିତି ପାଂଚସାତଟି କାଉପିଲାଂକୁ ବଳି ଦେଇ ଫିଁଗିଚି । ବାପା ଥିଲାବେଳର କଥା - ଥରେ ମତେ ବାପା ବୋଉ ମାଇଲେ । ମୁଁ ସଂଧ୍ୟାବେଳେ ଆମ ଗୁହାଳର କୁଟାଗଦାରେ ଲୁଚି ରାତି ବାରଟା ପର୍ଯ୍ୟନ୍ତ ରହିଲି । ସାଇ ପଡ଼ିଶା ଆଖପାଖରେ ଖୋଜି ମତେ ନପାଇବାରୁ ଘରେ ସମସ୍ତେ ଭାବିଲେ ମାଡ଼ ରାଗରେ ନଇକୁ ଡ଼େଇଁ ଭାସି ଯାଇଥିବ । ବଂଶସାରା

କାଂଦିଲେ । ମୁଁ କୁଟାଗଦାରେ ରହି ସବୁ ଶୁଣୁଥାଏ । ପରିବାରଂକ ବିକଳ, ବାପାବୋଉଂକ କାଂଦିବା ଶୁଣି ମନରେ ଦୁଃଖ ହେଲା, ଧୀରେ ଝାଡ଼ିଝୁଡ଼ି ହୋଇ ଆସି ଠିଆହେଲି । ବାପା ବୋଉ ଦେଖି କୁଂଢ଼େଇ ପକେଇଲେ, ଘରର ସମସ୍ତେ ଚିଂତାମୁକ୍ତ ହେଲେ ।

ସେତେବେଳେ ସବର୍ଣ୍ଣ ଶ୍ରେଣୀର ଲୋକମାନେ ଆମକୁ - ପାଣ, କଂଡ଼ରା, ଗୋଖା ଜାତିର ଲୋକଂକୁ - ଛୁଉଁ ନଥିଲେ । ଆମେ ଚାଟଶାଳୀରେ ଅଲଗା ବସି ପାଠ ପଢୁଥିଲୁ । ଅବଧାନେ ଆମକୁ ବେତ ଫିଙ୍ଗି ମାରୁଥିଲେ, ଛୁଇଁକିରି ବାଡେଉ ନଥିଲେ । ବେତ ଫିଙ୍ଗିବା ବେଳେ ଯଦି ଆମ ଲୁଗାରେ ଲାଗିଯାଏ ତାହେଲେ ସେ ବେତକୁ ଶିକ୍ଷକଂକ ପାଖକୁ ନେଇ ଅଲଗା ରଖିଦେବାକୁ ହୁଏ । ମୋର ମନେ ଅଛି, ମତେ ଛଅ କି ସାତ ବର୍ଷ ହୋଇଥିବ, ଆମେ ସେତେବେଳେ ଅବଧାନଂକଠାରୁ ପାଠ ସାରି ଗାଁ ସ୍କୁଲ୍‌ରେ ପଢୁଥାଉ । ସ୍କୁଲକୁ ଗଲାବେଳେ, ଆମ ଗାଁର ଜଣେ ବ୍ରାହ୍ମଣ ଯୁବକ, ଦିବାକର ଦାସ, ଆମ ଦି ଭାଇଂକ ଛାଇକି ଡେଇଁକିରି ଯାଉଥିଲେ - ଆମ ଛାଇ ତାଂକ ଉପରେ ପଡିଲେ ସେ ଛୁଆଁ ହୋଇ ଯିବେ । ଏପରି ଛୁଆଁ ଅଛୁଆଁ ଭାବ ସେତେବେଳେ ଥିଲା ।

ପାଲା, ଯାତ୍ରା, ଇତ୍ୟାଦି ଗାଁରେ ସେ ସମୟରେ ବେଶି ହେଉଥାଏ । ଆମେ ଯାତ୍ରା ଦେଖିବାକୁ ଗଲେ ଦୂରରେ ଅଲଗା ବସି ଦେଖିବାକୁ ହୁଏ । ପାଣ କଂଡ଼ରାକୁ ଛୁଇଁବ ନାହିଁ, କଂଡ଼ରା ଗୋଖାକୁ ଛୁଇଁବ ନାହିଁ । ହରିଜନମାନଂକ ଭିତରେ ମଧ୍ୟ ସାନବଡ଼ ଜାତିଭେଦ୍ ଥିଲା । ଆମ ଗାଁର ବ୍ରାହ୍ମଣ, ଖଣ୍ଡାୟତ ଓ ଅନ୍ୟ ସବର୍ଣ୍ଣ ଶ୍ରେଣୀର ଲୋକେ ଆମକୁ ଘୃଣା କରନ୍ତି, ଛୁଅଁତି ନାହିଁ । ଖରସୁଆଁ ନଈରେ ଗାଧୋଇଲାବେଳେ ଏକା ତୁଠ ହୋଇଥିଲେ ବି ପାଣିସୁଅର ଉପରପଟେ ସବର୍ଣ୍ଣମାନେ ଗାଧୋଇବେ, ସୁଅ ତଳପଟେ ଆମେ ଗାଧୋଇବୁ । ଏ ପ୍ରକାର ଭେଦ ସେତେବେଳେ ଗାଁମାନଂକରେ ଥିଲା ।

ମଝିଆ ଭାଇଂକ ସାଂଗରେ ସ୍କୁଲକୁ ପାଠ ପଢ଼ିବାକୁ ଯାଉଥାଏ । ପଖାଳ ଭାତ ଲୁଣ ଲଗାଇ ଅଳ୍ପ ଭାତ ପେଟେ ତୋରାଣୀ ପିଇ ସ୍କୁଲକୁ ଯିବାକୁ ହୁଏ । ମୁଁ ପାଠପଢ଼ାରେ ମନ ନ ଦେଇ, କେଉଁଠି ଗୀତ ଗାଇବା, ପାଲା ହେଉଥିବା ଇତ୍ୟାଦି ଜାଗାକୁ ଯାଇ ଗୀତ ଶିଖିବା କାମରେ ସମୟ ଦେଉଥିଲି । ଏହି ପରି ସାତ ବର୍ଷରେ ତୃତୀୟ ଶ୍ରେଣୀ ଯାଏ ପଢ଼ି, ବହିପତ୍ର ଅଭାବ ସାଂଗକୁ ଖାଇବା ପିଇବା ଅସୁବିଧା କାରଣରୁ ପାଠପଢ଼ା ଛାଡ଼ିବାକୁ ପଡ଼ିଲା । ବଡ଼ଭାଇଂକ ସାଂଗରେ ମୂଲ ଲାଗିବା ଓ ମା ଖରସୁଆଁ ନଈ

ସେପାରିକୁ ବିରି ଉପାଡ଼ି ମଜୁରିରେ ବିରି ଆଣିବାକୁ ଗଲେ ମୁଁ ମଧ୍ୟ ମା ସାଂଗରେ ବିରି ଉପାଡ଼ିବା କାମ କରୁଥାଏ । ବର୍ଷା, ବଢ଼ି ଦିନରେ ବେଳେ ବେଳେ ଭୋକ ଉପାସରେ ମୂଲ ଲାଗିବାକୁ ନ ଗଲେ ମା-ଭାଇଂକ ମାଡ ଗାଳି ଭୟରେ ଜାମୁ କୋଳି ଖାଇ ଦିନସାରା ମତେ କଷ୍ଟରେ ରହିବାକୁ ହୁଏ । ପର୍ବ ପର୍ବାଣୀରେ ପାଖ ଯଜମାନଂକ ଘରକୁ ଯାଇ ଭିକ ମାଗିବାକୁ ହୁଏ । ବିରି ଜାଉ, ବିରି ପିଠା କରି ମା ଆମକୁ ଖାଇବାକୁ ଦିଏ, କାରଣ ବିରି ଉପାଡ଼ି ଗଲେ ବିରି ଆକାରରେ ମଜୁରି ମିଳେ । ଜମି ନଥିବା ପାଖ ପଡ଼ିଶା ହରିଜନମାନଂକ ଅବସ୍ଥା ଆମଠାରୁ ଆହୁରି ଖରାପ ।

ଆମ ଗାଁରେ ଜମିଦାର କେହି ନଥିଲେ । ଆମ ଗାଁକୁ ପାଁଚ ଛଅ କି.ମି. ଦୂର ଜରି ଗାଁରେ ଜମିଦାର ଥିଲେ । ସେ ଗାଁର ପାଣ, କଂଡ଼ରା, ଗୋଖା ତାଂକ ଘରେ କାମ କରଂତି । ଜମିଦାରଂକୁ ସେମାନେ ସାଆଂତେ ବୋଲି ଡ଼ାକଂତି । ହେଲେ, ପାଣ ବୈଷ୍ଣବ ତାଂକ ଘରେ କାମ କରଂତି ନାହିଁ । ଯେଉଁ ସବର୍ଣ୍ଣ ପାଣ ବୈଷ୍ଣବଂକ ପ୍ରତି ଭଲ ବ୍ୟବହାର କରଂତି କେବଳ ତାଂକ ପାଖକୁ ଯାଆଂତି । ହିନ୍ଦୁ ଧର୍ମର ଯେଉଁ ପର୍ବ ପାଣମାନେ କରଂତି, ବୈଷ୍ଣବମାନେ ସେ ପର୍ବରେ ତାଂକ ଯଜମାନଂକ ଘରକୁ ଗଲେ ସେମାନେ ଶକ୍ତି ଅନୁସାରେ ଭିକ୍ଷା ଚାଉଳ, ପଇସା ଦିଅଂତି । ଅନ୍ୟ ହରିଜନ କଂଡ଼ରା, ଗୋଖା ବା ସବର୍ଣ୍ଣଂକ ଘରକୁ ଭିକ୍ଷାପାଇଁ ଯିବାର ବିଧି ନାହିଁ । ଏ ଗୋଟିଏ ନୀତି ପାଣ ବୈଷ୍ଣବମାନେ ମାନି ଚଳିଚଂତି ।

ପାଖ ପଡ଼ିଶା ସବର୍ଣ୍ଣ ଶ୍ରେଣୀର ଲୋକ ଯିଏ କଲିକତା ଯାଇ ଦି ପଇସା ରୋଜଗାର କରଂତି ସେମାନେ ଭଲରେ ଚଳଂତି । ଆମେ ମଜୁରି ଲାଗିଲା ବେଳେ ଦିନକୁ ଦିଅଣା ମଜୁରି ମିଳେ । ଗୋଟିଏ ଟଂକାକୁ ଆଠ ଦିନ ମଜୁରିରେ କାମ କରିବାକୁ ହେଉଥାଏ । ମୋ ପିଲାଦିନେ ଆମ ଗାଁର କେହି କେହି ପାଣ, କଂଡ଼ରା, ଗୋଖା ଲୋକ କଲିକତା ଇତ୍ୟାଦି ସହରରେ ଯାଇ କାମ କରୁଥିଲେ । ଯିଏ ବାହାରେ ଯାଇ କାମ କରୁଥିଲେ ତାଂକ ଅବସ୍ଥା ଭଲ ଥିଲା । ହେଲେ, ଗାଡ଼ିଭଡ଼ା ଇତ୍ୟାଦି ଖର୍ଚ୍ଚ ପାଇଁ ପଇସାର ଅଭାବ ଯୋଗୁଁ ବେଶି କେହି ଯାଉ ନଥିଲେ । ଏବେ ବେଶି ସଂଖ୍ୟାରେ ଗଲେଣି ।

ପାଣ, କଂଡ଼ରା, ଇତ୍ୟାଦି ଅଛବ ଜାତିର ଲୋକେ ଛତା ଧରି ଯୋତା ପିଂଧି, ବଡ଼ ଧୋତି ପିଂଧି ଗାଁ ଦାଂଡ଼ରେ ଚାଲିବା ମନା । ଜମିଦାର ଶ୍ରେଣୀର ଲୋକେ ମାଡ଼ ମାରିବେ ଏ ଭୟରେ ସେତେବେଳେ ପାଣ, କଂଡ଼ରା, ପଛୁଆ ବର୍ଗର ଲୋକେ ଭୟରେ ଚଳୁଥିଲେ । ବ୍ରିଟିଶ୍ ଶାସନ, ରଜା ଜମିଦାରଂକ ଶାସନ ଏକ ଅଂଧାରି ମୁଲକ ପରି ଥିଲା ।

ମୋର ଆମ ପିଲା ବେଳର କଥା ମନେ ଅଛି - ଜଣେ କଂଡ଼ରା ଯୁବକ, ଓଳେଇ ଗାଁରେ ତା ଘର, ତା ବାପା କଲିକତାରେ ଚାକିରିକରି ପୁଅକୁ ମେଟ୍ରିକ୍ ଯାଏ ପାଠ ପଢ଼ାଇଲେ । ପୁଅ ଯାଜପୁର ହାଇସ୍କୁଲରେ ମେଟ୍ରିକ ପାସ୍‌କରି ଗାଁକୁ ଆସିଥାଏ । ବଂଧୁ ଘରକୁ ଯିବାକୁ ଖଂଡ଼େ ଭଲ ଧୋତି ଚାଦର ପିଂଧି, ଗୋଟେ ଛତା ଧରି ସୁନ୍ଦରପୁର ଗାଁ ବାଟ ଦେଇ ଗଲା । ଗାଁ ଦାଂଡ଼ରେ ସୁଂଦରାୟ ଖଂଡ଼ାୟତ ଜମିଦାର ବସି ସାଂଗମାନଂକ ସାଂଗରେ କଥା ହେଉଥାଆଂତି । ସୁଂଦରାୟ ଜମିଦାର ସାଂଗମାନଂକୁ ପଚାରିଲେ, ଏ ଯୁବକ ଜଣକ କିଏ, ଧୋତି ଚାଦର ପିଂଧି ଛତା ଧରି ଆମ ଦାଂଡ଼ରେ ଯାଉଛି । ଜାଣିଥିବା ଲୋକ କହିଲେ, ଓଳେଇ ଗାଁର ମଳିକ ଟୋକା, ମେଟ୍ରିକ ପାସ୍ କରି ଆସିଛି । ଜମିଦାର ସୁଂଦରାୟ ମଳିକଟୋକାକୁ ପାଖକୁ ଡ଼ାକି କହିଲେ, ଆରେ ଶଳା, ତୁ ଜାଣୁ ନାହୁଁ ସୁଂଦରାୟ ଜମିଦାରଂକ ଗାଁ, ତୁ ଆମ ଦାଂଡ଼ରେ ଧୋତି ଚାଦର ପିଂଧି ଛତା ଧରି ଆମ ଆଗରେ ଚାଲିଯିବୁ ! ତୋର ଏଡ଼େ ବଡ଼ ସାହସ ! ସେ ଯୁବକକୁ ମାଡ଼ ମାରିଲେ, ତା ଧୋତି ଚାଦରକୁ ତା ହାତରେ କଢ଼ାଇ, ଚିରାଲୁଗା ପିଂଧାଇ, ଛତାକୁ ଭାଂଗି, ତାକୁ ଘରକୁ ପଠେଇଦେଲେ । ଯୁବକ ଗାଁକୁ ଫେରି ଆସି ସବୁକଥା କହିଲା । ଗାଁର ମଳିକ-ହରିଜନମାନଂକ ମୁଖିଆ କହିଲେ, ତୁ ସିନା ମେଟ୍ରିକ ପାସ୍ କଲୁ, ହେଲେ ରାଜା ଜମିଦାରଂକ ଦାଂଡ଼ରେ ଧୋତି ପିଂଧି ଛତା ଧରି ଯିବାକୁ ତତେ କିଏ କହିଲା ? ଜମିଦାରକୁ କିଏ କହିବ ? ଓଲଟି ମାଡ଼ ଖାଇବାକୁ ? କର୍ମକୁ ଆଦରି, ମାଡ଼ଖାଇ ରହିଲା । ଏ ପ୍ରକାର ଅଂଧାରି ଶାସନ ଅତ୍ୟାଚାର ସେତେବେଳେ ଚାଲିଥିଲା ।

ସାମାଜିକ ବାସଂଦ କଥା କହିଲାବେଳେ, ଅନେକ ଦିନ ପରର ଆମ ଗାଁ ପାଖର ଦିଟି କଥା ମନେ ପଡୁଚି । ୧୯୪୯ ମସିହା ହେବ । ମୁଁ ସେତେବେଳେ ସର୍ବୋଦୟ ଆଶ୍ରମରେ କାମ କରୁଥାଏ । ଆମ ଗାଁରେ ମୋର କାମ ପଡ଼ିବାରୁ ମୋର ଜଣେ ପାଣ ବୈଷ୍ଣବ ସାଂଗକୁ ସାଥିରେ ଧରି ଗାଁକୁ ଯାଉଥାଏ । ହଠାତ୍ ବର୍ଷା ଆରମ୍ଭ ହେଲା । ବର୍ଷାରୁ ରକ୍ଷା ପାଇବା ପାଇଁ ଆମେ ଗ୍ରାମ ଦେବତୀ ଠାକୁରଘରର ହଲ୍ ଭିତରେ ପଶିଗଲୁ । ଗାଁର ଯୁବକମାନେ ଯାଇ ଗାଁର ମୁଖ୍ୟ ଚକ୍ରଧର ସାମଲଂକୁ କହିଲେ (ସେ ଆଉ ନାହାଂତି) । ଚକ୍ରଧର ସାମଲ ଆସି ଆମକୁ ଗାଳିଦେଇ ସେ ଜାଗାରୁ ଆମକୁ ବାହାର କରିଦେଲେ । ମୁଁ ସର୍ବୋଦୟ କର୍ମୀ ଥିବାରୁ, ତାଂକ ସହିତ ଯୁକ୍ତି କଲି । ମାତ୍ର, ଗାଁ ମେଳି ଯୋଗୁଁ ମୋ କଥା କେହି ଶୁଣିଲେ ନାହିଁ । ସବର୍ଣ୍ଣଂକ ଭିତରେ ବି ଗାଁରେ

କେତେଜଣ ଭଲ ଲୋକ ଥିଲେ । ସେମାନେ ଆମକୁ ଛୁଅନ୍ତି, ଘୃଣା କରଂତି ନାହିଁ । କିଂତୁ, ସାମାଜିକ ବ୍ୟବସ୍ଥା ଏ ପ୍ରକାର ଥିଲା, ତେଣୁ ଘୃଣାଭାବ ସମସ୍ତଂକୁ ଘାରୁଥିଲା ।

ଆଉ ଗୋଟିଏ କଥା । ୧୯୫୩ ମସିହାର କଥା ହେବ । ଆମ ଗାଁ ସିଂହପୁରର ଜଣେ ଖଂଡ଼ାୟତ ସଂଭ୍ରାନ୍ତ ଶ୍ରେଣୀର ଯୁବକ, ନାଆଁ ଦୁର୍ଯୋଧନ ଥାଟୋଇ । ତାଂକ ଘର ଆମ ଘରଠୁଁ ଅଧ କି.ମି. ବାଟ । ତାଂକ ବଂଶଂକ ପରଂପରାଗତ ଡ଼ାକ ନାଆଁ ବଳିଆର ସିଂ ପଦବି । ଆଖପାଖ କୋଡ଼ିଏ ଖଂଡ଼ ଗାଁର ଲୋକ ତାଂକୁ ମୁଖ୍ୟ ବୋଲି ମାନଂତି ଓ ଭାରି ସମ୍ମାନ କରନ୍ତି । ସେ ଆମ ଗାଁର ଜଣେ ପାଣର ଘରକୁ ଯା ଆସ କରି ଗୋଟିଏ ପାଣ ଝିଅକୁ ବାହା ହବାକୁ ସ୍ଥିର କଲେ । ସମାଜର ବଂଧନକୁ, ବାଡ଼କୁ କାଟି ବିଭା ହେଲେ । ତାଂକ ନିଜ ପରିବାର ତାଂକୁ ଘରେ ପୂରାଇଲେ ନାହିଁ । ସେ ପୂଜ୍ୟ ଗୋପବାବୁ, ରମାଦେବୀ ଓ ମନମୋହନଭାଇଂକ ପାଖକୁ ଆସି ସର୍ବୋଦୟ ଓ ଭୂଦାନରେ କାମ କଲେ । ନିଜ ଖଂଡ଼ାୟତ ପରିବାରଠୁଁ ଅଲଗାରେ ନିଜ ଘର ପାଖରେ ଏକ ଘର କରି ରହିଲେ, ବହୁ ଘାତ ପ୍ରତିଘାତ ଭିତରେ । ଖଂଡ଼ାୟତ ସମାଜରେ ଘୃଣିତ ହେଲେ । ଗାଂଧୀ, ବିନୋବା, ଗୋପବାବୁ, ରମାଦେବୀ ଓ ଏ ଅଂଚଳର ପ୍ରାଣକୃଷ୍ଣ ପଟ୍ଟନାୟକ, ପଦ୍ମଲାଭ ରାୟ ଆଉ ମୋ ସାଥିରେ ରହି ସତ୍ ସାହସ କରି ସମାଜର କଳଂକ ବାଡ଼କୁ କାଟିଲେ । ଆଠ ଦଶ ବର୍ଷ ତଳେ ତାଂକର ମୃତ୍ୟୁ ହେଲା । ତାଂକ ପତ୍ନୀ ଏବେ ତାଂକ ପରିବାରରେ ମିଶି ଅଛନ୍ତି । ନିଜ ବାପ ମାଂ'କ ପାଖକୁ ଫେରିନାହାନ୍ତି ।

ଆମ ଗାଁରେ ଯାତ୍ରା ଦଳ ଥିଲା । ଗାଁରେ ସବର୍ଣ ଆମକୁ ଘୃଣା କରନ୍ତି, ତେଣୁ ତାଂକ ଯାତ୍ରା ପାର୍ଟିରେ ମିଶେଉ ନଥିଲେ । ମୋର ଭଲ କଂଠ ଥିବାରୁ ବୈଷ୍ଣବ ପାଲା ଦଳରେ ମୁଁ ଗୀତ ଗାଉଥାଏ । ସବର୍ଣ କିନ୍ତୁ ଆମ ପାଲା ଶୁଣିବାକୁ ଆସଂତି । ମୁଁ ମୋ ମାମୁଁଘର ଝୁପୁରୀ ଗାଁକୁ ଯାଇଥିଲି । ମାମୁଂକ ଶଳା ଭୀମଦାସ ମୋ ଗୀତ ଶୁଣି, କଂଠସ୍ୱର ଦେଖି ତାଂକ ଗାଁ କୁଆଁରପୁରରେ ଏକ ନାଟ ଦଳରେ ମୋତେ ନେଇ ରଖାଇ ଦେଲେ । ସେତେବେଳେ ୧୯୩୯ ମସିହା ହେବ । ନାଟଦଳରେ ରହି ନାଟ ଶିଖୁଥାଏ । ମହାତ୍ମା ଗାଂଧୀଙ୍କ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ ଦେଶକୁ ସ୍ୱାଧୀନ କରିବାକୁ । ବ୍ରିଟିଶ ସରକାର ବିରୋଧରେ ଦେଶସାରା ଆନ୍ଦୋଳନ ଚାଲିଥାଏ । କୁଆଁରପୁର ଗାଁର ଜଗନ୍ନାଥ ଦାସ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ଆନ୍ଦୋଳନ କରିବାକୁ ଗାଁଲୋକଂକୁ ବୁଝାଉ ଥାଆଂତି । ଆମେ ଆନ୍ଦୋଳନ କଥା ଶୁଣୁ ଥାଉଁ ।

୧୯୪୨ରେ ସ୍ୱରାଜ୍ୟ ଆନ୍ଦୋଳନ ଦେଶ ସାରା ବ୍ୟାପକ ଆକାରରେ ଆରଂଭ ହେଲା । କୁଆଁରପୁରର ଜଗନ୍ନାଥ ଦାସ, ଛତ୍ରପଡ଼ାର ପଦ୍ମଲାଭ ରାୟଙ୍କ ଡ଼ାକରାରେ ଆମେ ଖଂଡ଼େ ଖଂଡ଼େ ନେଳିଆ ବାଡ଼ି ଧରି ଯାଜପୁର କଚିରି ଘେରାଉ କରିବାକୁ ବାହାରି ପଡ଼ିଲୁ, ପଦ୍ମଲାଭ ରାୟ ଓ ଜଗନ୍ନାଥ ଦାସଂକ ମାର୍ଗଦର୍ଶନରେ । ହଜାର ହଜାର ଜନତା ଯାଜପୁର ସହର ଭିତରେ ପଶି କଚିରି ଚାରିପାଖ ଘେରିଯାଇ ଥାଆଂତି । ଏସ୍.ଡ଼ି.ଓ. ତାଂକ ଅଫିସରୁ ବାହାରିଲା ବେଳକୁ ପଦ୍ମଲାଭ ରାୟ ଓ ଜଗନ୍ନାଥ ଦାସ ତାଂକୁ କହିଲେ, ଆପଣ ଭାରତୀୟ, ଆମେ ଆପଣଂକୁ କହୁଛୁ, ଆପଣ ସ୍ୱଦେଶୀ ବସ୍ତ୍ର ଖଦୀ ପିଂଧଂତୁ, ବିଦେଶୀ ବର୍ଜନ କରଂତୁ । ସାଂଗେ ସାଂଗେ ମଙ୍ଗଳପୁର ଚୌକିଦାର ମଂଗୁଳି ଜେନା ଗୋଟିଏ ଖଦୀ ଧୋତି ଆଣି ଏସ୍.ଡ଼ି.ଓଂକୁ ପିଂଧାଇ ଦେଲେ । ସଭା ଚାଲିଥାଏ । ଏହି ସମୟରେ ଏକ ଉଡ଼ାଜାହାଜ ଉପରେ ଉଡ଼ିବା ଦେଖାଗଲା । ଜାହାଜ ଉଡ଼ିବା ଦେଖି ଲୋକେ ଡ଼ରିଗଲେ । ଜାହାଜରୁ ମଝିରେ ନିଆଁ ପଡ଼ିବା ଦେଖି ଜମା ହୋଇଥିବା ହଜାର ହଜାର ସାଧାରଣ ଜନତା ଭୟରେ ଦୌଡ଼ିବାକୁ ଲାଗିଲେ । ଆମେ ମଧ୍ୟ ପଳାଇ ଆସିଲୁ । ଦୁଇଦିନ ପରେ ଗାଁ ଗାଁ ରେ ପୁଲିସ ଆସି ଜଗନ୍ନାଥ ଦାସଂକ ସାଂଗରେ ଯାଇଥିବା ଆନ୍ଦୋଳନକାରୀଂକୁ ଆରେଷ୍ଟ କରି ନେଇଗଲେ । ଆମେ କେତେଜଣ ଲୁଚିକରି ରହିଗଲୁ ।

## ଆଶ୍ରମବାସୀ ହେଲି

ମୁଁ ଯାତ୍ରା ଦଳରେ ତି ବର୍ଷ ରହି ଘରକୁ ଆସିଲି । ତା ପରେ ମାମୁଂଡ଼ାରେ ଏକ ଯାତ୍ରା ଦଳରେ ମିଶିଲି । ବର୍ଷେ ଯାତ୍ରା ଦଳରେ ରହି ପୁଣି ଘରକୁ ଆସି ଘରେ ରହି ପୁରୋହିତ କାମ କରୁଥାଏ । ଏହି ସମୟରେ ମୋର ଜଣେ ମାମୁଁ, ନୃସିଂହ ଦାସ, ସ୍ୱାଧୀନତା ଆଂଦୋଳନରେ ଭାଗ ନେଇ କଲ୍ୟାଣପୁର ଆଶ୍ରମରେ ରହି ସୂତାକଟା ଶିଖୁଥାଆଂତି । ଆଶ୍ରମର ଚାଳକ ନଂଦକିଶୋର ଦାସ ପ୍ରାଣକୃଷ୍ଣ ପଟ୍ଟନାୟକଂକ ମାର୍ଗଦର୍ଶନରେ ଗାଂଧୀଜୀଂକ ରଚ଼ନାତ୍ମକ କାର୍ଯ୍ୟକ୍ରମ ଗାଁମାନକରେ ବୁଲି ଲୋକଂକୁ ବୁଝାଉ ଥାଆଂତି । ସେ ଦିନେ ପ୍ରାଣକୃଷ୍ଣ ପଟ୍ଟନାୟକଂକ ସାଂଗରେ ଖରସୁଆଁ ନଈରେ ଡ଼ଂଗାରେ ବସି ଜରି ଗାଁକୁ ଯାଇଥିଲେ । ଜରି ଗାଁରୁ ଡ଼ଂଗାରେ ଫେରିଲା ବେଳେ ମାମୁଁ

ନୃସିଂହ ଦାସ ତାଂକୁ କହିଲେ, ମୋର ଭଣଜାଟିଏ ଭଲ ଗୀତ ଗାଏ, ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇଥିଲା, ଯାତ୍ରା ଦଳରେ ଥିଲା, ଏବେ ଘରେ ଅଛି । ତାକୁ କଲ୍ୟାଣପୁର ଆଶ୍ରମକୁ ନେବା । ପ୍ରାଣକୃଷ୍ଣ ବାବୁ ନୃସିଂହ ଦାସଂକ ସାଂଗରେ ଆମ ଘରକୁ ଆସିଲେ ।

ମୁଁ ଘରେ ଥିଲି । ପ୍ରାଣକୃଷ୍ଣବାବୁ ମୋ ବଡ଼ ଭାଇଂକୁ ଡ଼କାଇ କହିଲେ, ନିଶାକରକୁ କଲ୍ୟାଣପୁର ଆଶ୍ରମକୁ ନେବି । ସେଠାରେ ତା ମାମୁଁ ନୃସିଂହ ଦାସଂକ ସାଂଗରେ ରହି ସୂତାକଟା, ଗାଂଧୀଜୀଂକ ରଚ଼ନାତ୍ମକ କାମ ଆମସାଂଗରେ କରିବ । ମୋ ମା ମତେ ପଠାଇବାକୁ ରାଜି ହେଲେ ନାହିଁ । ଭାଇ ଟିକିଏ ରାଜି ଥିବାର ତାଂକ କଥାରୁ ଜାଣିଲି । ମୁଁ କହିଲି, ନୃସିଂହ ମାମୁଁ ଅଛଂତି, ମୁଁ ତାଂକ ସାଂଗରେ ରହି ଗାଂଧୀ କାମ କରିବି । ଏତକ କହି ଲୁଗାପିଂଧି ମୁଁ ଯିବାକୁ ପ୍ରସ୍ତୁତ ହୋଇ ପଡ଼ିଲି । ମୋ ବୋଉ କାଂଦିଲା । ଭାଇ, ଦାଦା, ଅନ୍ୟମାନେ ତାକୁ ବୁଝାଇଲେ । ମୁଁ କଲ୍ୟାଣପୁର ଆଶ୍ରମରେ ରହି ସୂତାକଟା ଶିଖିବା ସାଂଗକୁ ପ୍ରାଣକୃଷ୍ଣବାବୁଂକ ସଂଗରେ ସୂତାକଟା, ନିଶାମୁକ୍ତି, ଛୁଆଁ ଅଛୁଆଁ ଭେଦ ଦୂର କରିବା, ଧର୍ମ ଭେଦ କିଛି ନାହିଁ, ଆମେ ସମସ୍ତେ ମଣିଷ, ଇତ୍ୟାଦି କଥା ବୁଝାଇବା ସାଂଗକୁ ଜାତୀୟ ସଂଗୀତ ଗାଇ, ସ୍ୱାଧୀନତା ଆସିବ ବୋଲି ବୁଝାଉଥାଏ ।

୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲା । କଲ୍ୟାଣପୁର ଆଶ୍ରମରେ ସୂତାକଟା ଶିଖିସାରି ମୁଁ ପ୍ରାଣକୃଷ୍ଣ ବାବୁଂକ ଘରେ ରହୁଥାଏ । ମୁଁ ଜାତିରେ ପାଣ ବୈଷ୍ଣବ ବୋଲି ପ୍ରାଣକୃଷ୍ଣ ବାବୁଂକ ପତ୍ନୀ ମୋତେ ଛୁଇଁ କୌଣସି କାମ କରାନ୍ତି ନାହିଁ । କଂସା ଥାଳିରେ ଭାତ ଖାଇଲେ ସେ ବାସନ ଅଲଗା ରଖିବାକୁ ପଡ଼େ । ପ୍ରଥମେ କଦଳୀ ପତ୍ରରେ ଖାଇବାକୁ ଦେଲେ, ତାପରେ ଥାଳି କଂସାରେ । ପ୍ରାଣକୃଷ୍ଣ ବାବୁଂକ ମନରେ ଛୁଆଁ ଅଛୁଆଁ ଭେଦ ନଥାଏ । ତାଙ୍କ ସ୍ତ୍ରୀଂକ ଭିତରେ ଥାଏ । ଥରେ ମାସଡ଼ା ହାଇସ୍କୁଲରେ ଗଣେଶ ପୂଜାକୁ ପ୍ରାଣବାବୁଂକୁ ନିମନ୍ତ୍ରଣ କରିଥିଲେ, ପ୍ରସାଦ ଖାଇବାକୁ ପାଣୁବାବୁଂକ ସାଂଗରେ ସ୍କୁଲକୁ ଗଲୁ । ମୁଁ ପାଣ ବୈଷ୍ଣବ ହୋଇଥିବାରୁ ମୋତେ ଅଲଗା ବସାଇଥିଲେ ଏବଂ ଅଲଗା ଖାଇବାକୁ ଦେବାକୁ କଦଳୀ ପତ୍ର ପ୍ରସ୍ତୁତ କରୁଥିଲେ । ପ୍ରାଣକୃଷ୍ଣ ବାବୁ ଏକଥା ଦେଖି ମୋ ପାଖରେ ଆସି ମୋ ସାଂଗରେ ବସିଲେ । ଆମେ ଦିହେଁ ଅଲଗା ଖାଇଲୁ ।

ମହାତ୍ମା ଗାଂଧୀଂଙ୍କୁ ନାଥୁରାମ୍ ଗୋଡ଼୍ସେ ଗୁଳିକରି ହତ୍ୟା କରିବା ଦିନ

ଦେଶସାରା ଶୋକର ଛାୟା ଖେଳିଗଲା । ଆମେ କଲ୍ୟାଣପୁରରେ ଥିବା ସମସ୍ତ ଗାଂଧୀଜନ କାଂଦିକାଂଦି ରହିଲୁ । ଶୋକସଭା କରି, ହଜାର ହଜାର ଜନତା ପ୍ରାର୍ଥନାସଭା କଲୁ । ସେ ସଭାମାନଂକରେ ମୁଁ ରାମଧୂନ ଓ ଭଜନ ଗାଇଲି । ତାପରେ ପ୍ରାଣକୃଷ୍ଣବାବୁଂକ ସାଂଗରେ ବରି ଗଲି । ପୂ. ଗୋପବଂଧୁ ଚୌଧୁରୀ ଓ ମା ରମାଦେବୀ ବରିରେ ଆଶ୍ରମ କରି ରହୁଥାଆଂତି । ତାଙ୍କ ପାଖକୁ ଯାଇଁ ଗାଂଧୀଜୀଂକ ରଚନାତ୍ମକ କାର୍ଯ୍ୟକ୍ରମ ସଂପର୍କରେ ମାର୍ଗଦର୍ଶନ ନେଇ ଆସି ସେହି କାମରେ ଲାଗିବାକୁ ହେଉଥାଏ । ଛୁଆଁଛୁତ ଦୂର କରିବା, ନିଶାମୁକ୍ତି, ଖଦୀ, ଗ୍ରାମୋଦ୍ୟୋଗ, ସୂତାକଟା, ଧର୍ମଭେଦ ଲୋପକରିବା ଇତ୍ୟାଦି କାର୍ଯ୍ୟରେ ମନ ନିବେଶ କରିଥାଏ । ଯାଜପୁର ସବ୍‌ଡିଭିଜନ୍ କ୍ଷେତ୍ରରେ ମୁଖ୍ୟ ସର୍ବୋଦୟ କର୍ମୀ ପଦ୍ମଲାଭ ରାୟ ଓ ବିପିନ ମହାଂତି, ଶାନ୍ତନୁ କୁମାର ଦାସ, ବୈଦ୍ୟନାଥ ଦାସ, ପ୍ରାଣକୃଷ୍ଣ ପଟ୍ଟନାୟକ ଇତ୍ୟାଦି କର୍ମୀମାନେ ଗାଁମାନ ବୁଲି ବୁଝାଉଥାନ୍ତି ।

ବିପିନ ବିହାରୀ ମହାଂତି ଲୋକାଲବୋର୍ଡ ଚେୟାରମ୍ୟାନ ଥାଆଂତି ଓ ପ୍ରାଣକୃଷ୍ଣ ବାବୁ ଭାଇସ ଚେୟାରମ୍ୟାନ୍ । ପ୍ରାଣକୃଷ୍ଣ ବାବୁ ମତେ ସାଂଗରେ ନେଇ ଜରୀ ଗାଁକୁ ସ୍କୁଲ ପରିଦର୍ଶନ କରିବାକୁ ଗଲେ - ଏକ ଡଂଗାରେ ଖରସୁଆଁ ନଈରେ । ସ୍କୁଲରେ ପହଂଚି ପ୍ରାଣକୃଷ୍ଣବାବୁ ଦେଖିଲେ ଖଂଡ଼ାୟତ ଓ ବ୍ରାହ୍ମଣ ଇତ୍ୟାଦିଂକ ପିଲାମାନେ ଏକାଠି ବସିଛଂତି; ମାତ୍ର କଂଡ଼ରା, ପାଣ, ଗୋଖାପିଲାମାନେ ଅଲଗା ବସିଛଂତି । ପ୍ରାଣକୃଷ୍ଣବାବୁ ଶିକ୍ଷକମାନଂକୁ କହିଲେ, ଦେଶ ସ୍ୱାଧୀନ ହୋଇଗଲା, ଛୁଆଁ ଅଛୁଆଁ ଭେଦ ଦେଶରୁ ଉଠିଗଲା । ଏହା କହି, ସବୁ ପିଲାଂକୁ ଏକାଠି ବସାଇ ଦେଲେ ପ୍ରାଣକୃଷ୍ଣବାବୁ । କଥାଟି ଜମିଦାରମାନଂକ କାନକୁ ଗଲା । ଜମିଦାରମାନେ କଂଡ଼ରାମାନଂକ, ପାଣମାନଂକ ଓ ଗୋଖାମାନଂକ ମୁଖ୍ୟମାନଂକୁ ସାଂଗେ ସାଂଗେ ଡକାଇ ତାଂକୁ କହିଲେ, ତମ ବାପ ଅଜା ସାତ ପୁରୁଷରୁ ଆମ ଜମିଦାର ରଜାମାନଂକ ପାଖରେ ବସିଛ କି, ଆଂଭମାନଂକୁ ଛୁଇଁଛକି? ପାଣ, କଂଡ଼ରା ଓ ଗୋଖାମାନେ କହିଲେ, ନାଇଁ ସାଆଁତେ, ଆପଣମାନେ ଜମିଦାର, ଆମେ ପ୍ରଜା, ଏତେ ବଡ଼ ସାହସ ଆମର ହେବ, ଆମେ ଆପଣମାନଂକ ସାଂଗରେ ଏକାଠି ବସିବୁ ! ଜମିଦାରମାନେ କହିଲେ, ଦେଖ, ଜଣେ ପାଣୁ ପଟ୍ଟନାୟକ ଆସି ଆମ ପିଲାମାନଂକ ସାଂଗରେ ତମ ପିଲାମାନଂକୁ ସ୍କୁଲରେ ଏକାଠି ବସାଇ ଦେଲେ । ତମ ପୁଅ ଝିଅ ସବୁ ରାତିରେ ମରିଯିବେ । "କ'ଣ ସାଆଁତେ, ଏତେ ବଡ଼ କଥା ସେ

ପାଣୁବାବୁ ଆସି ଆମ ଗାଁ ସ୍କୁଲରେ କରିଦେଲେ ! ସାଆଁତେ, କଣ ଆମକୁ କରିବାକୁ ହେବ ଆଦେଶ କରନ୍ତୁ, ଆମେ କରିବୁ" । ଜମିଦାରମାନେ କହିଲେ, ସେ ପାଣୁବାବୁକୁ ଓ ତାଂକ ସାଂଗରେ ଆସିଥିବା ଟୋକାକୁ ମାଡ଼ ମାରି ଆମ ଗାଁରୁ ବିଦା କରିଦିଅ । ଜମିଦାରମାନଂକ କହିବା ମାତ୍ରେ ଠେଂଗାବାଡ଼ି ଧରି ଆମକୁ ବାଡ଼େଇବା ପକାଶେ ତିନିଶହ ଲୋକ ସ୍କୁଲ ପାଖରେ ଜମା ହୋଇଗଲେ । ଏତେ ଲୋକ ଠେଂଗାବାଡ଼ି ଧରି ଏକାଠି ହେବା ଦେଖି ଆମେ ଭୟରେ କିଂ କର୍ତବ୍ୟ ବିମୂଢ଼ ହୋଇପଡ଼ିଲୁ । ସେମାନେ ପ୍ରାଣକୃଷ୍ଣବାବୁଂକୁ କହିଲେ, ଆପଣମାନେ ଆମ ଗାଁରେ ପଶି ଏତେ ବଡ଼ ଭୁଲକାମ କଲେ । ଆମ ବାପ ଅଜା ଅମଳରୁ ଜମିଦାର ଆମର ରଜା, ସେ ଆମର ସାଆଁତ ଅଟଂତି । ତାଂକ ପିଲାଂକ ସାଂଗରେ ଆମପିଲାଂକୁ ଏକାଠି ବସାଇଲେ ! ଏତେ ବଡ଼ ଅପରାଧରେ ଆମ ପୁଅ ଝିଅ ମରିଗଲେ କିଏ ଦାୟୀ ହେବ ଏହାର ଜବାବ ଦିଅଂତୁ । ପାଣୁବାବୁ କହିଲେ, ଆପଣମାନେ ବସଂତୁ, ଶାଂତ ହୋଇ ମୋ କଥା ଶୁଣଂତୁ । ଏଣେ ମୁଁ, ଏତେ ଲୋକ ଠେଂଗା ବାଡ଼ି ଧରି ଆମକୁ ବାଡେଇବା ଉଦ୍ଦେଶ୍ୟ ଦେଖି, ଭୟରେ ଥରୁଥାଏ । ପାଣୁବାବୁ ମୋତେ କହିଲେ, ନିଶାକର, ଗୋଟିଏ ଜାତୀୟ ସଂଗୀତ ଗାଇ ଏ ଲୋକମାନଂକୁ ଶୁଣା । ମୁଁ ସାଂଗେ ସାଂଗେ ଗୀତ ଗାଇଲି:

"ମଣିଷକୁ ଯେବେ ମଣିଷ ଛୁଇଁବ,
କେଉଁ ବାଟେ ଯିବ ଜାତି,
ଏ ତ ଅଂଧ ବୁଝାମଣା ନୀତି ।
ଏକ ଦେଶଭୂଇଁ ସବୁରି ଜନନୀ
ଏକ ପରମେଷ୍ଠି ଗୀତା,
ଏକ ଘରେ ଆମେ ସବୁ ଭାଇ ଭାଇ,
କାମ ଆମ ନାନାଜାତି,
ଏ ତ ଅଂଧ ବୁଝାମଣା ନୀତି" ।

ଏ ଗୀତର ଅର୍ଥ ପାଣୁବାବୁ ବୁଝାଇଦେଇ କହିଲେ, ଏଇ ନିଶାକର ତମର ଜଣେ ପାଣ ବୈଷ୍ଣବ ଅଟଂତି, ସେ ଆମ ଘରେ ରହୁଚଂତି, ଆମ ଘରେ ଖାଉଚଂତି । ସେ'ତ ମରୁ ନାହାଂତି କି ମୁଁ ମରି ଯାଉନାହିଁ । ଏ ଗୋଟିଏ ଭୁଲ କଥା । ମୁଁ ବି ଜଣେ ଜମିଦାର । ମହାତ୍ମା ଗାଂଧୀ ଦେଶ ସ୍ୱାଧୀନ କଲେ । ଏ ଦେଶରେ ଆମେ ସମସ୍ତେ ମଣିଷ । ଏଠାରେ

ରାଜା-ଜମିଦାର, ଛୋଟ-ବଡ଼ ଭେଦ ପାଡ଼ିରି ଆମ ପୂର୍ବପୁରୁଷମାନେ କରି ତମମାନଂକୁ ଅଛୁଆଁ ରଖିଥିଲେ । ଆମେ ଆଜି ଏ ସ୍କୁଲରେ ରହିବୁ । ତମ ପୁଅଝିଅ ମରିଗଲେ ସେଥିପାଇଁ ଆମେ ଦାୟୀ ହେବୁ । ଏହି ପ୍ରକାରେ ପ୍ରାଣକୃଷ୍ଣ ବାବୁ ବୁଝାଇଲେ, ମୁଁ ମଧ୍ୟ ବୁଝାଇଲି । ଲୋକମାନେ ଗାଂଧୀଜୀଙ୍କ କଥା, ଗୀତ ଓ ପ୍ରାଣକୃଷ୍ଣ ବାବୁଂକ କଥା ଶୁଣି ଶାଂତ ହୋଇ ବସି ରହିଲେ । ଆମେ ସେଦିନ ସ୍କୁଲରେ ଜଗି ରହିଲୁ । ତା ଆର ଦିନ ଜେନା, ମଲ୍ଲିକ ଓ ଗୋଖାମାନଂକ ବସ୍ତିକୁ ପାଣୁବାବୁଂକ ସାଂଗରେ ଯାଇ ବୁଝାଇ ପରିବର୍ତନ କରିଦେଲୁ । ମଲ୍ଲିକମାନଂକର ମୁଖ୍ୟ ବାବୁ ମଲ୍ଲିକ ସେ ସମସ୍ତଂକୁ ବୁଝାଇଲେ ଏବଂ ଅକ୍ରୁର ଜେନା ମଧ୍ୟ ବୁଝାଇଲେ । ଜମିଦାରଂକ ସାହିରେ ନୀଳମଣି ଦାସ, ଦୁର୍ଗାଚରଣ ସାମଲ, ଲୋକନାଥ ସାମଲ ଜମିଦାରଂକ ଚକ୍ରାଂତ, ଭୁଲକଥା ନ ଶୁଣି ଆମ ସାଂଗରେ ମିଶି କଥା ହେଲେ । ଏସବୁ ସତ୍ୟ କଥା ବୋଲି ସମସ୍ତଂକୁ ବୁଝାଇଲେ । ଜରି ଗାଁରେ ସୂତାକଟା ଛୁଆଁଛୁତ ଉଠାଇବା, ନିଶାମୁକ୍ତି ଇତ୍ୟାଦି ଗାଂଧୀଜୀଂକ ରଚ଼ନାତ୍ମକ କାମ କରିବାକୁ ଗାଁର ଯୁବକମାନେ ପ୍ରତିଜ୍ଞା କଲେ । ପ୍ରାଣକୃଷ୍ଣ ବାବୁ ମତେ କହିଲେ, ନିଶାକର, ତମେ ଏ ଗାଁରେ ରହି ସୂତାକଟା ଶିଖେଇବ । ମୁଁ ଓ ପ୍ରାଣକୃଷ୍ଣବାବୁ ବରି ଯାଇ ପୂ. ଗୋପବଂଧୁ ଚୌଧୁରୀ, ମା ରମାଦେବୀ ଓ ମନମୋହନ ଚୌଧୁରୀଂକୁ ଜରି ଘଟଣା ସବୁ କହି, ତୁଳା, କିସନ୍ ଚରଖା ଆଣି ଜରିରେ ରହି ସୂତାକଟା ଶିଖାଇଲି । ଏ ଗାଁକୁ ବିପିନ ବିହାରୀ ମହାଂତି, ଶାଂତନୁ ବାବୁ, ପଦ୍ମଲାଭ ରାୟ ଓ ଅନ୍ୟ ବିଶିଷ୍ଟ ସର୍ବୋଦୟ କର୍ମୀ ଆସିଲେ । ଜରି ଗାଁର ଜମିଦାରମାନଂକ ଦର୍ପ ଭାଂଗିଗଲା । ହରିଜନ ଓ ଅଧିକାଂଶ ସବର୍ଣ, ଯେଉଁମାନେ ଜମିଦାରଂକଦ୍ୱାରା ପୀଡ଼ିତ ଥିଲେ, ସେମାନେ ଏକଜୁଟ ହୋଇ ଜମିଦାରମାନଂକୁ ଏକଘରିକିଆ କରି ରଖିଲେ । ତାଙ୍କ ଘରେ କେହି ଚାକିରିରେ ରହିଲେ ନାହିଁ, ଚାଷ କଲେ ନାହିଁ, ତାଂକ ଗାଈ ଗୋରୁ କେହି ଜଗିଲେ ନାହିଁ, ଗୁହାଳରୁ ଗୋବର କାଢିଲେ ନାହିଁ । ଜମିଦାରମାନେ ନାନା ପ୍ରକାର ବ୍ୟସ୍ତରେ ପଡ଼ିଗଲେ । ପ୍ରାଣକୃଷ୍ଣବାବୁ ଓ ଅନ୍ୟ ନେତୃସ୍ଥାନୀୟ ଲୋକେ ବାରଂବାର ଆସି ସାଧାରଣ ଲୋକଂକର ଏକତାକୁ ବଜାୟ ରଖିଲେ । ମୁଁ ମଧ୍ୟ ଏ ଗାଁରେ ରହି ସୂତାକଟା ଶିଖାଇବା ସାଂଗକୁ ଏକଜୁଟ୍ ରଖିବାରେ ସାହାଯ୍ୟ କରୁଥିଲି ।

ଆମ ସିଂହପୁର ଗାଁରେ କୋଡ଼ିଏ ଘର ପାଣ ଓ ଏକ ଘର ପାଣ-ବୈଷ୍ଣବଂକ ଘର ଖରସୁଆଁ ନଇ କୂଳରେ ଥିଲା । ଧୀରେ ଧୀରେ ନଇ ତାଙ୍କ ଘରଡିହ ଖାଇଯିବାରୁ

ଜମିଦାର ବ୍ରଜସୁନ୍ଦର ଦାସଂକୁ କହି ଉକ୍ତ ଏକୋଇଶ ଘର ହରିଜନ ପରିବାର ନଈକୂଳରୁ ଉଠିଆସି ବ୍ରଜବାବୁଂକ ଜମିରେ ଘରକରି ରହିଲେ । ଆମ ଗାଁର ସବର୍ଣ ଶ୍ରେଣୀର ଲୋକେ ଚକ୍ରାଂତ କରି ଏ ଏକୋଇଶ ଘର ହରିଜନଂକୁ ସେ ଜାଗାରୁ ଉଠାଇ ଦେଇ ସେଠାରେ ମାଇନର ସ୍କୁଲଟିଏ କରିବାକୁ ଉଦ୍ୟମ କଲେ । ଶୀଘ୍ର ଏଠାରୁ ଉଠିଯା ବୋଲି ବାରଂବାର ବ୍ୟସ୍ତ କରାଇଲେ । ଏ ହରିଜନ ପରିବାର ମତେ କହିଲେ, ବାବା, ତମେ ଟିକିଏ ପ୍ରାଣକୃଷ୍ଣବାବୁଂକୁ କହି ଆମକୁ ସାହାଯ୍ୟ ନ କଲେ ଗ୍ରାମବାସୀ ଜବରଦସ୍ତିରେ ଆମକୁ ଉଠାଇ ଦେବେ, ଆମେ ଯିବୁ କେଣେ? ମୁଁ ପ୍ରାଣକୃଷ୍ଣ ବାବୁଂକୁ ଏକଥା କହିଲି । ପ୍ରାଣକୃଷ୍ଣବାବୁ ଆସି ଗାଁବାଲାଂକୁ ବୁଝାଇଲେ । ହେଲେ, ପାଣୁବାବୁଂକ କଥା କେହି ଗାଁବାଲା ମାନିଲେ ନାହିଁ । ଏମାନଂକୁ ଉଠାଇ ଦେଇ ମାଇନର୍ ସ୍କୁଲ୍ ସେଇଠାରେ କରିବାକୁ ଜିଦ୍‌ଧରି ବସିଲେ । କ'ଣ କରାଯିବ! ଏ ଏକୋଇଶ ଘର ହରିଜନ ପରିବାରଂକ ପାଇଁ ବ୍ୟସ୍ତରେ ରହି ଚିଂତା କରି ଏମାନଂକୁ ସାଂଗରେ ନେଇ ସ୍ୱାଧୀନତା ସଂଗ୍ରାମୀ ବିପ୍ଳବୀ ନେତା ପଦ୍ମଲାଭ ରାୟଂକ ଗାଁକୁ ଯାଇଁ ସମସ୍ତ ଘଟଣା ରାୟବାବୁଂକୁ କହିଲି । ରାୟବାବୁ ଆମ ଗାଁକୁ ଆସି ଗାଁବାଲାଂକୁ ବହୁତ ବୁଝାଇଲେ । ଗାଁର ଖଳଲୋକେ ହରିଜନମାନଂକ ବିରୋଧୀ । ପଦ୍ମଲାଭ ରାୟଂକ କଥାକୁ ଅବଜ୍ଞା କଲେ । ପଦବାବୁ ମୋତେ କହିଲେ, ରମାଦେବୀଂକୁ ଏକଥା କହିଲେ ସେ ନିଶ୍ଚୟ ହରିଜନମାନଂକୁ ଏଠାରେ ରଖାଇ ଦେବାର ବ୍ୟବସ୍ଥା କରାଇ ପାରିବେ । ସେତେବେଳେ ମା ରମାଦେବୀ ଓ ପୂଜ୍ୟ ଗୋପବାବୁଂକୁ ସମସ୍ତେ ଦେବତା ପରି ମାନୁଥାଆନ୍ତି । ମୁଁ ପାଁଚସାତ ଜଣ ହରିଜନଂକୁ ସାଥିରେ ନେଇ ମା ରମାଦେବୀଂକୁ ଏ ସମସ୍ତ ଘଟଣା କହିଲି । ମା ଆମ ଗାଁକୁ ଆସିବାର ପୋଗ୍ରାମ୍ କଲେ । ଆମ ଗାଁ ସ୍କୁଲରେ ରମାଦେବୀ ପହଂଚିଲେ । ଗାଁର ଯୁବକ ଏବଂ ମୁଖ୍ୟମାନେ ଏକାଠି ହୋଇ ସ୍କୁଲ ଗୃହରେ ପହଂଚିଲେ । ମା ଗ୍ରାମବାସୀଂକୁ ବହୁତ କଥା ବୁଝାଇ କହିଲେ - ଦେଶ ସ୍ୱାଧୀନ ହେଲା, ଗରିବ ହରିଜନମାନଂକର ଜମି, ଘରଡିହ କିଛି ନାହିଁ । ତାଂକର କିଛି ଭରସା ନାହିଁ । ଏଠାରୁ ସେମାନଂକୁ ଉଠାଇ ଦେଲେ ସେମାନେ ଯିବେ କୁଆଡ଼େ? ସେମାନେ ତ ଜମିଦାର ବ୍ରଜବାବୁଂକୁ କହି ଏ ଜାଗାରେ ରହିଛଂତି । ଆପଣମାନଂକର ଜମି ଅଛି, ସେଇଠାରେ ମାଇନର ସ୍କୁଲ କରାଂତୁ । ଗ୍ରାମବାସୀ ଜିଦ୍ ଧରି କହିଲେ, ଏଇଠାରେ ମାଇନର ସ୍କୁଲ କରିବାକୁ ଆମ ଗ୍ରାମବାସୀ ନିଷ୍ପତ୍ତି କରି ବ୍ରଜସୁନ୍ଦରବାବୁଂକୁ କହିଚୁ । ମା ଶେଷରେ ଦେଖିଲେ, ଗ୍ରାମବାସୀ ଜିଦ୍‌ଖୋର, ତାଂକ

ଭିତ୍ତିରେ ଅଟକ । ମା କହିଲେ, ଏକୋଇଶ ଘର ନିଶ୍ଚ ହରିଜନ ପରିବାରଂକୁ ଏ ଭୂମିରୁ ଉଠାଇ ଦେଇ ମାଇନର ସ୍କୁଲ କରି ଶିକ୍ଷା ଦେବ । ଏପରି ଶିକ୍ଷା ଆମ ଦେଶର ଦରକାର ନାହିଁ । ଏହା କହିବାରୁ ଗ୍ରାମବାସୀ ମାଂ'କ ଉପରେ ରାଗିଯାଇ ଉଠି ପଳାଇଲେ । ସ୍କୁଲ ବାହାରକୁ ଆସି ମାଂ'କୁ ଅଭଦ୍ର ଭାଷାରେ ଗାଳି ଗୁଲଜ କରି ଗଲେ । ମା ଆମ ଗାଁ ସିଂହପୁରରୁ ବରି ଗଲେ, ମୁଁ ତାଂକୁ ସାଂଗରେ ନେଇ ବରିରେ ଛାଡିଲି । ସେ ମତେ କହିଲେ, ମୁଁ କଟକ ଗଲେ ବ୍ରଜସୁନ୍ଦରବାବୁ ଓ ତାଙ୍କ ସ୍ତ୍ରୀଂକୁ ସମସ୍ତ କଥା ବୁଝାଇ କହି ହରିଜନ ପରିବାରଂକୁ ସେହିଠାରେ ରଖିବା ବ୍ୟବସ୍ଥା କରାଇବି । ସେ କଟକ ଯାଇ ବ୍ରଜସୁନ୍ଦର ଦାସ ଜମିଦାର ଓ ତାଂକ ସ୍ତ୍ରୀଂକୁ ସମସ୍ତ କଥା ବୁଝାଇ କହିଲେ । ବ୍ରଜବାବୁ ମାଂ'କ କଥା ମାନି ହରିଜନମାନଂକୁ ଉକ୍ତ ଜାଗାରୁ ନ ଉଠିବାକୁ ମାଂ'କ ଦ୍ୱାରା କହି ପଠାଇଲେ ବୋଲି ମା ମତେ କହିଲେ । ଏ ଏକୋଇଶ ଘର ହରିଜନ ମାଂ'କ ଗୁଣଗାନ କରି ସେହି ଜାଗାରେ ବସବାସ କରି ରହିଚଂତି ।

## ଲୁଗାବୁଣା ଶିଖିଲି

ମୁଁ ଏ ସମସ୍ୟା ସହିତ ଜଡ଼ିତ ଥାଇ ମଧ୍ୟ ଜରି ଗାଁରେ ସୂତାକଟା କାର୍ଯ ଚାଲୁ ରଖିଥିଲି, କିସନ୍ ଚରଖାରେ । ସୂତା ବହୁତ ହୋଇଗଲା । ଏ ସୂତାରେ ଲୁଗା ବୁଣିବା କଥା । କିପରି ହେବ? ମୁଁ ପ୍ରାଣକୃଷ୍ଣବାବୁଂକ ସାଂଗରେ ବରି ରାମଚନ୍ଦ୍ରପୁର ଗଲି । ପୂଜ୍ୟ ଗୋପବାବୁ, ମା ରମାଦେବୀ ଓ ମନମୋହନ ଭାଇଂକୁ ସମସ୍ତ ଘଟଣା କହିବାରୁ ମନମୋହନ ଭାଇ, ଗୋପବାବୁ ଓ ମା ମତେ କହିଲେ, ନିଶାକର, ତମେ ଭଦ୍ରକ ବାଳାଶ୍ରମ ଯାଇ ସେଠାରେ ୨ ବର୍ଷ ରହି ଲୁଗାବୁଣା ଶିଖିଆସ ।

୧୯୪୮ ମସିହାରେ ମୁଁ ଭଦ୍ରକ ବାଳାଶ୍ରମକୁ ଗଲି, ମନମୋହନ ଭାଇଂକ ଠାରୁ ଚିଠି ନେଇ ବୁଣାଇ ଶିକ୍ଷା କରିବାକୁ । ବାଳାଶ୍ରମର ମୁଖ୍ୟ ପୂ. ଈଶ୍ୱରଲାଲ ବ୍ୟାସଜୀଂକୁ ଚିଠି ଦେଲି । ବ୍ୟାସଜୀ ଦୁଇଜଣ ବୁଣାଇ ଗୁରୁଜୀଂକୁ, ଶ୍ରୀ କପିଳଭାଇ ଓ ଶ୍ରୀ ଗୌରୀଶ୍ୟାମଭାଇଂକୁ, ଡକାଇ ବୁଣାଇ ଶିକ୍ଷାର ବ୍ୟବସ୍ଥା କରାଇଲେ । ଭଦ୍ରକ ବାଳାଶ୍ରମରେ ଏକ ଛାତ୍ରାବାସ ଆଦିବାସୀ, ହରିଜନ ଓ ଦୁର୍ବଳ ଶ୍ରେଣୀର ଲୋକଂକ ପାଇଁ ଚାଲିଥାଏ । ସେଠାରେ ରହି ଦି ବର୍ଷ ଲୁଗାବୁଣା ଶିକ୍ଷା କଲି ।

ଦିନେ ମୋର ରୋଷେଇ ପାଳି ଥାଏ । ଦୁଧ ଚୁଲିରେ ବସାଇ ଥାଏ । ହଠାତ୍ ଦୁଧ ଉତୁରି ପଡ଼ିଲା । ଦୁଧ ଉତୁରି ପୋଡ଼ିଗଲେ କଳିଗୋଳ ହୁଏ ବୋଲି ଶୁଣିଥିଲି । ମନର ଆଶଂକା ମନଭିତରେ ଥାଏ । କପିଳ ଗୁରୁଜୀ ଦୁଧ ପୋଡ଼ିଯିବା ବାସନା ପାଇ ରୋଷେଇ ଘରକୁ ପଶି ଆସି ମୋତେ ଧମକେଇ ଗାଳିକଲେ । ମୁଁ ଖୁବ୍ ନମ୍ର ଭାବରେ ଯେତେ ବୁଝାଇଲି, ସେ ମୋ କଥାକୁ ମୋଟେ ମାନିଲେ ନାହିଁ । ମୁଁ ପ୍ରତିବାଦ କରି ତାଂକୁ କହିଲି, ଯେତେ ଦୁଧ ନଷ୍ଟ ହୋଇଯାଇଛି ତା ମୁଁ କିଣି ଦେବି । ସେ ମୋ ଉପରେ ରାଗି ଯାଇ ମୋତେ ଗୋଟିଏ ବାଡ଼ିରେ ବାଡେଇଲେ । ମୁଁ ଠେଲା ପେଲା କଲି ଏବଂ ବାଡିକୁ ଛଡାଇବାରୁ ଆଶ୍ରମର ପିଅନକୁ ଡାକି ମୋତେ ଗେଟ୍ ବାହାରକୁ ଠେଲିଠେଲି ଆଣି ଗେଟ୍‌ରେ ତାଲା ପକାଇ ଦେଲେ । ମୋ ମନକୁ ଭାରି ବାଧିଲା । ମୁଁ କଣ କରିବି, କୁଆଡେ ଯିବି ରାଗ ମନରେ କିଛି ଠିକ୍ କରି ପାରିଲି ନାହିଁ । ଭଦ୍ରକ ଆଶ୍ରମରୁ ରେଳ ଷ୍ଟେଶନ ଚାରି ପାଁଚ ମାଇଲ ବାଟ । ଚାଲିକରି ଯାଇ ରେଳ ଷ୍ଟେଶନରେ ବସି ଖୁବ୍ ଭାବି, ଚିଂତା କରି ଠିକ୍ କଲି ରେଲଗାଡି ଆସିଲେ ତା ଆଗକୁ ଡେଇଁପଡ଼ି ଆତ୍ମହତ୍ୟା କରିବି । ଘରକୁ ଯିବି ନାହିଁ କି ବରି ରାମଚନ୍ଦ୍ରପୁର ଯାଇ ପୂ. ଗୋପବାବୁ, ମା ରମାଦେବୀ ଏବଂ ମନମୋହନ ଭାଇଂକୁ ଏ କଥା କହିବି ନାହିଁ । ଏ କଥା ସ୍ଥିର କରି, ଆସିବା ରେଲଗାଡି ଅପେକ୍ଷାରେ ବସିଛି । କପିଳଭାଇ ଆଶ୍ରମର ଦି ତିନି ଜଣ ଶିକ୍ଷାର୍ଥୀଂକୁ ସାଂଗରେ ଧରି ଆସି ମୋତେ ପଛରୁ କୁଂଢ଼ାଇ ପକାଇ ବହୁତ ବୁଝାଇଲେ - ତମ ଉପରେ ରାଗି ମୋର ଭୁଲ ହୋଇଛି, ତମେ ଆଶ୍ରମକୁ ଚାଲ । ସମସ୍ତେ ମୋତେ ଟାଣି ଟାଣି ଆଶ୍ରମକୁ ନେଲେ । ରାଗ ଶାଂତ କରି ଆଶ୍ରମରେ ରହିଲି । ସେହିଦିନ ମୋର ମରିବାର ଥିଲା, ଈଶ୍ୱରଂକ ଇଛା ସେ ମୋତେ ବଂଚାଇ ରଖିଲେ ।

## ଓଡ଼ିଶାରେ ବିନୋବାଜୀଂକ ପଦଯାତ୍ରା

୧୯୫୦ ମସିହାରେ ମୋର ବୁଣାଇ ଟ୍ରେନିଂ ସରିଆସୁଥାଏ । ଖବର ଆସିଲା, ଅନୁଗୁଳଠାରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ହେବ । ମୁଁ ଅନ୍ୟ ସାଂଗସାଥିଂକ ସାଂଗରେ ଅନୁଗୁଳ ସର୍ବୋଦୟ ସମ୍ମିଳନୀରେ ସ୍ୱେଚ୍ଛାସେବକ ଭାବରେ କାମ କରିବାକୁ ଗଲି । ସର୍ବୋଦୟ ସମ୍ମିଳନୀକୁ ମୁଖ୍ୟ ହୋଇ ଆଚାର୍ଯ୍ୟ ବିନୋବା ଭାବେ ଆସିବାର

ଥିଲା । ସେ ଆସିଲେ ନାହିଁ । ହାଇଦ୍ରାବାଦ ତେଲେଂଗାଣାଠାରେ ସ୍ୱାଧୀନତା ପରେ ଭୂମି ସମସ୍ୟାକୁ ମୂଳକରି ହିଂସାରେ ବିଶ୍ୱାସ କରୁଥିବା ଲୋକମାନେ ହଣାକଟା କରୁଥିଲେ । ସେଠାକୁ ବିନୋବାଜୀ ପଦଯାତ୍ରା କରିଯିବେ ସ୍ଥିର କରିଥାଆଂତି । ତେଣୁ ଏ ସମ୍ମିଳନୀକୁ ଆସିବେ ନାହିଁ । ସମ୍ମିଳନୀର ମୁଖ୍ୟ କାକା କାଲେଲ୍‌କର୍ ହେବାର ସ୍ଥିରହେଲା । ସମ୍ମିଳନୀ ସରିଗଲା । ମୁଁ ଅନୁଗୁଳ ସମ୍ମିଳନୀ ଶେଷରେ କଲ୍ୟାଣପୁର ଆଶ୍ରମକୁ ଯାଇଁ ଲୁଗାବୁଣା ଆରଂଭ କଲି । ଲୁଗାବୁଣା କାର୍ଯ ଚାଲିଥାଏ । ୧୯୫୨ ମସିହାରେ ପୂ. ବିନୋବାଜୀଂକ ଭୂଦାନ ପଦଯାତ୍ରା ସାରା ଭାରତବର୍ଷରେ ଚାଲିବାର ନିଷ୍ପତ୍ତି କରାଗଲା । ଆମ ଓଡିଶାରେ ୧୯୫୩ ମସିହାରେ ଭୂଦାନ ଆନ୍ଦୋଳନ ଖୁବ୍ ଜୋରରେ ଚାଲିଥାଏ । ଏ କାମରେ ମୁଁ ଭାଗ ନେଲି । ପୂ. ଗୋପବାବୁ, ମା ରମାଦେବୀଂକ ପଦଯାତ୍ରାରେ ଭୂଦାନ କାମରେ ମୁଁ ବୁଲୁଥାଏ । ୧୯୫୪ ମସିହାରେ ମୁଁ ସଦର ସବ୍‌ଡିଭିଜନ, ଜଗତସିଂହପୁର, ଏରସମା, ବାଲିକୁଦା ଓ ତିର୍ତୋଲ କ୍ଷେତ୍ରରେ ଇନ୍ଦ୍ରମଣି ମହାଂତି, ବାଗଲପୁରର ହରେକୃଷ୍ଣ ବିଶ୍ୱାଳ, ନାଗପୁରା ଗାଁର ନିଶାମଣୀ ଖୁଣ୍ଟିଆଂକ ମାର୍ଗଦର୍ଶନରେ ଭୂଦାନ ସଂଗ୍ରହ କାମରେ ଲାଗିଲି । ଭୂଦାନ କାର୍ଯ୍ୟ ଖୁବ୍ ଜୋରସୋରରେ ଚାଲିଥାଏ । ଘୋଷଣା କରାଗଲା ଯେ ପୂଜ୍ୟ ବିନୋବାଜୀ ପଶ୍ଚିମ ବଂଗରୁ ଭୂଦାନ ପଦଯାତ୍ରାରେ ଓଡିଶା ଆସିବେ । କଟକଠାରେ ଗୁଣନିଧି ବାବୁ ତାଂକ ଜମି ଘର ବାଡ଼ି ସର୍ବୋଦୟ ଭୂଦାନ କାର୍ଯ କରିବାକୁ ଦେଇଦେଲେ । ଥୋରିଆସାହିରେ ଏହା ହେଲା ଗୁଣନିଧି ଭବନ । ଏବେ ସେହିଠାରେ ସର୍ବୋଦୟ ମଂଡ଼ଳ କାର୍ଯାଳୟ, ଖଦୀ ଇତ୍ୟାଦି ଚାଲିଛି । ସେତେବେଳେ ସେଠାରେ ଭୂଦାନ ଆନ୍ଦୋଳନ ଅଫିସ ଚାଲିଥାଏ । ଶ୍ରୀ ଶରତ ଗୁରୁଜୀ (ମହାରଣା) ଓଡ଼ିଶା ଭୂଦାନ ଅଫିସର ମୁଖ୍ୟ ଭାବରେ କାମ କରୁଥାଆଂତି । ୧୯୫୫ ମସିହାରେ ପୂଜ୍ୟ ବିନୋବାଜୀ ଭୂଦାନ ପଦଯାତ୍ରାରେ ପଶ୍ଚିମ ବଂଗଳାରୁ ଲକ୍ଷ୍ମଣନାଥ ଦେଇ ଓଡ଼ିଶାକୁ ଆସିବା ସ୍ଥିର କରାଗଲା । ପଦଯାତ୍ରାରେ କିଏ କିଏ ରହିବେ, କି କି ଦାୟିତ୍ୱ ସେମାନଂକୁ ଦିଆଯିବ, ତାହା ସ୍ଥିର କରାଗଲା । ପଦଯାତ୍ରାରେ ଶ୍ରୀ ମନମୋହନ ଚୌଧୁରୀ ବିନୋବାଜୀଂକ ହିଂଦୀ ଭାଷଣକୁ ଓଡ଼ିଆରେ ଅନୁବାଦ କରିବେ, ଶ୍ରୀ ଅନାଦି ନାୟକ ବିନୋବାଜୀଂକ ଭାଷଣକୁ ଉତାରି ପକାଇବେ, ମଂଗଳା ମାଉସୀ ବିନୋବାଜୀଂକ ଓ ପଦଯାତ୍ରୀଂକ ଖାଦ୍ୟ ଖବର ବୁଝିବେ, ଇଶ୍ୱରଲାଲ ବ୍ୟାସଜୀ ପଦଯାତ୍ରାରେ ରହିବେ, ବଂଶୀଧର ମଳିକ ରୋଷେଇରେ ସାହାଯ୍ୟ କରିବେ, ଅନାଦିଚ଼ରଣ ଦାସ ବିନୋବାଜୀଂକ ଭାଷଣକୁ ସାଇକ୍‌ଲୋଷ୍ଟାଇଲ୍ କରିବେ, ମୁଁ

- ନିଶାକର ଦାସ - ବିନୋବାଜୀଂକ ଖାଇବା କ୍ଷୀରରୁ ଏକ ଯନ୍ତ୍ର ସାହାଯ୍ୟରେ ମଖନ ବାହାରକରିବି । ତା ବାଦ୍ ସଭାରେ ଭୂଦାନ ଗୀତ ଗାଇ ସାଧାରଣ ଜନତା ଯେ ସଭା ଶୁଣିବାକୁ ଆସିଥିବେ ତାଂକୁ ଏକାଠି କରି ବସାଇବା, ଗୀତ ଶୁଣେଇବା, ବାବାଂକ ପ୍ରାର୍ଥନା ସଭାରେ ଭଜନ ଧୂନ ଗାଇବା, ଓଡିଆ ପ୍ରାର୍ଥନା କରିବା କାମର ଦାୟିତ୍ୱ ମୋ ଉପରେ ଥିଲା । ଶ୍ରୀ ସୁରେନ୍ଦ୍ରନାଥ ନାୟକ ପଦଯାତ୍ରୀଂକ ବ୍ୟବସ୍ଥା କରିବେ, ପୂ. ଗୋପବଂଧୁ ଚୌଧୁରୀ ମଝିରେ ମଝିରେ ପଦଯାତ୍ରାରେ ରହିବେ ଏବଂ ଭୂଦାନ ଗ୍ରାମଦାନ ସଂଗ୍ରହ କାମରେ କର୍ମୀମାନଂକୁ ପ୍ରେରଣା ଦେଇ କାର୍ଯକୁ ଆଗେଇ ନେବେ, ମା ରମାଦେବୀ ବାବାଂକ ପଦଯାତ୍ରାରେ ମଝିରେ ମଝିରେ ରହିବେ ଓ ନାରୀ କର୍ମୀମାନଂକୁ ପ୍ରେରଣା ଦେଇ ଭୂଦାନ ଗ୍ରାମଦାନ ଆଂଦୋଳନକୁ ଆଗେଇ ନେବେ, ମାଳତୀ ଦେବୀ କର୍ମୀମାନଂକ ମଧ୍ୟରେ, ମହିଳା କର୍ମୀଂକ ଭିତରେ ଜାଗରଣ ସୃଷ୍ଟି କରିବା କାମ କରିବେ । ଓଡ଼ିଶାର ବିଶିଷ୍ଟ କର୍ମୀମାନେ ସାରା ଓଡ଼ିଶାରେ ସବୁ ଜିଲ୍ଲାରେ ବାଂଟି ହୋଇ ଭୂଦାନ ସଂଗ୍ରହ କାମରେ ଲାଗିଥିଲେ । ପଦଯାତ୍ରାରେ ପୂଜ୍ୟ ବିନୋବାଜୀ ପଶ୍ଚିମ ବଂଗଳାରୁ ଲକ୍ଷ୍ମଣନାଥ ଦେଇ ଓଡ଼ିଶାକୁ ଆସିଲେ । ଆମେ କର୍ମୀମାନେ ତାଂକ ପଦଯାତ୍ରାରେ ଚାଲିଥାଉଁ । ସର୍ବସେବା ସଂଘ ପକ୍ଷରୁ ନିଷ୍ପତ୍ତି ହେଲା ଯେ ସେ ବର୍ଷ ଓଡ଼ିଶାରେ ସର୍ବୋଦୟ ସମ୍ମିଳନୀ ହେବ । ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମଂତ୍ରୀ ଥାଆଂତି । ପଦଯାତ୍ରା ଓ ଭୂଦାନ ଗ୍ରାମଦାନ ସଂଗ୍ରହ ସାଂଗକୁ ସର୍ବୋଦୟ ସମ୍ମିଳନୀ ପାଇଁ ସାରା ଓଡ଼ିଶାରୁ ସାଧାରଣ ଜନତାଂକ ଠାରୁ ଅର୍ଥ ସଂଗ୍ରହ, ଚାଉଳ, ଗୁଡ଼, ନଡ଼ିଆ ଇତ୍ୟାଦି ଖାଦ୍ୟ ସଂଗ୍ରହ କାର୍ଯ୍ୟରେ ଗୋପବାବୁ, ରମାଦେବୀ, ମାଳତୀ ଚୌଧୁରୀ, ଆଚାର୍ଯ ହରିହର ଦାସ, କୃପାସିଂଧୁ ହୋତା, ଇଶ୍ୱରଲାଲ ବ୍ୟାସ ଓଗେରେ ବହୁ ବିଶିଷ୍ଟ ବ୍ୟକ୍ତି ଲାଗି ପଡ଼ିଲେ । ପୁରୀ ଠାରେ ଖୁବ୍ ଭଲ ଭାବରେ ସର୍ବୋଦୟ ସମ୍ମିଳନୀ କରାଗଲା । ତା'ପରେ ପଦଯାତ୍ରା ଚାଲିଲା । ବ୍ରହ୍ମପୁରରେ ବିନୋବାଜୀଂକ ରହଣି ଦୁଇଦିନ ରଖାଗଲା । ପ୍ରଧାନମଂତ୍ରୀ ପଂଡ଼ିତ ଜବାହାରଲାଲ ନେହେରୁଂକ ଉପସ୍ଥିତି ଏବଂ ପୂ. ବିନୋବାଜୀଂକ ମାର୍ଗ ଦର୍ଶନରେ ଚାଲିଥିବା ଭୂଦାନ ଗ୍ରାମଦାନଦ୍ୱାରା ସତ୍ୟ ଅହିଂସା ବାଟରେ ଭୂମି ସଂପତ୍ତିର ସମବଂଟନ କିପରି ସ୍ୱେଚ୍ଛାକୃତ ଭାବରେ ଦାନସୂତ୍ରରେ କରାଯାଉଛି ତା'ର ସମୀକ୍ଷା କରାଗଲା ।

# କୋରାପୁଟରେ ଗ୍ରାମଦାନ

ବିନୋବାଜୀଂକ ପଦଯାତ୍ରା ଗଂଜାମ ଜିଲ୍ଲା ଶେଷକୁ କୋରାପୁଟ ଜିଲ୍ଲାରେ ଚାଲିଥାଏ । ଗ୍ରାମଦାନ, ଭୂଦାନର ଆନ୍ଦୋଳନ ଏତେ ବ୍ୟାପକ ଭାବରେ ବଣ ଜଂଗଲ ପାହାଡ଼ ଘାଟି ଘେରା ମଧ୍ୟରେ ଚାଲିଥାଏ । ରାସ୍ତା ନଥାଏ । ସରକାରଂକ ଦ୍ୱାରା ବଣ ଜଂଗଲ କଟାଯାଇ ନୂଆ ରାସ୍ତା ତିଆରି ଚାଲିଥାଏ । ଏବେ ଯେଉଁ ରାସ୍ତା ଦେଇ କଟକ-ଭୁବନେଶ୍ୱରରୁ କୋରାପୁଟକୁ ବସ ଇତ୍ୟାଦି ଯାଉଛି, ସେହି ରାସ୍ତାରେ ପଦଯାତ୍ରା ଚାଲିଥାଏ । ବିନୋବାଜୀଂକ ପଦଯାତ୍ରା କୋରାପୁଟ ଜିଲ୍ଲାରେ ପହଂଚିଲା । ଆଦିବାସୀମାନେ ବିନୋବାଜୀଂକ ସଭାରେ ଯୋଗ ଦେଇ, ତାଂକ ଭାଷଣ ଶୁଣି, ଯାଇ ଗାଁକୁ ଗାଁ ଗ୍ରାମଦାନର ଘୋଷଣା କଲେ । ଗ୍ରାମଦାନର ସ୍ରୋତ ଏତେ ବ୍ୟାପକ ହେଲା ଯେ ସାରା ବିଶ୍ୱରେ ଚହଳ ପଡ଼ିଗଲା । ବଡ଼ ବଡ଼ ନେତା, ଲୋକନାୟକ ଜୟପ୍ରକାଶ ନାରାୟଣ, ଅଶୋକ ମେହେତାଂକ ପରି ବିଶିଷ୍ଟ ନେତାମାନେ କୋରାପୁଟ ଆସି ବିନୋବାଜୀଂକ ପଦଯାତ୍ରାରେ ଭାଗନେଲେ । ଭାରତର ରାଷ୍ଟ୍ରପତି ଡ଼ଃ ରାଜେଂଦ୍ର ପ୍ରସାଦ ସରକାରୀ କାମରେ ଆଂଧ୍ର ପ୍ରଦେଶ ଆସିବାର ଥାଏ । ସେ ସେଠାରୁ ରେଳଯୋଗେ ଆସି ରାୟଗଡ଼ା ପାଖ ତେରୁବାଲି ଷ୍ଟେଶନ୍‌ଠାରେ ବିନୋବାଜୀଂକୁ ଭେଟିବାର ଇଛା ପ୍ରକାଶ କଲେ । ରାଷ୍ଟ୍ରପତି ଓ ବିନୋବାଜୀଂକୁ ଦେଖିବାପାଇଁ ହଜାର ହଜାର ସଂଖ୍ୟାରେ ସ୍ତ୍ରୀ ପୁରୁଷ କାଖରେ ପିଲା ଧରି ଆସି ପହଂଚିଲେ । ଦିହିଁଙ୍କ ଦର୍ଶନ କଲେ, ବିନୋବାଜୀଂକଠାରୁ ଭୂଦାନ ଗ୍ରାମଦାନ ବାର୍ତା ଶୁଣିଲେ । ବିନୋବାଜୀଂକ ଲେଖା ଗୀତା ପ୍ରବଚନ ହିଂଦୀ ଓ ଓଡ଼ିଆରେ ବହୁ ପରିମାଣରେ ବିନୋବାଜୀଂକ ସଭାରେ ବିକ୍ରୟ କରାଯାଉଥାଏ । ଏକ ଟଂକା ମୂଲ୍ୟର ଏ ବହିର ପ୍ରଥମ ପୃଷ୍ଠାରେ ବିନୋବାଜୀ ନିତ୍ୟ ପଠନୀୟ ବୋଲି ଲେଖି ଦସ୍ତଖତ କରି ଦେଉଥିବାରୁ ସେ କାମ ପାଇଁ ବହୁତ ବେଳ ଲାଗୁଥାଏ । କୋରାପୁଟ ଜିଲ୍ଲାରୁ ସ୍ୱାଧୀନତା ସଂଗ୍ରାମୀ ଆଦିବାସୀ କର୍ମୀ ଶହ ଶହ ସଂଖ୍ୟାରେ ବାହାରି ଗ୍ରାମଦାନ ଆନ୍ଦୋଳନକୁ ଏତେ ବ୍ୟାପକ କରାଗଲା ଯେ ଗାଁ କୁ ଗାଁ ସ୍ୱେଚ୍ଛାକୃତ ଭାବରେ ଦାନର ଘୋଷଣା କରାଗଲା । ଏପରି ହେଲା ଯେ ପଦଯାତ୍ରା ସମୟରେ ଘୋଷଣା କରାଗଲା ଯେ ୧୯୫୭ ମସିହା ସୁଦ୍ଧା ଜମି ସଂପତ୍ତି ଉପରୁ ବ୍ୟକ୍ତିଗତ ମାଲିକାନା ଲୋପ ହୋଇଯିବ । ସେତେବେଳେ କବିମାନେ ଗୀତ ବାନ୍ଧିଲେ, ମୁଁ ତାକୁ ଗାଇଲି:

" ସତାବନକୁ ସେ ଦିଏ ଚେତାବନୀ,

ଛାଡ଼ ଧନ ମୋହ ଅଛ ଯେତେ ଧନୀ ।"

ତା ପରେ ଆଂଧ୍ର ପ୍ରଦେଶରେ ବିନୋବାଜୀଂକ ପଦଯାତ୍ରା ଆରଂଭ ହେଲା । ଓଡ଼ିଶାରୁ ମୁଁ, ଅନାଦି ଚରଣ ଦାସ ଓ ବଂଶୀଧର ମଳିକ ପୂଜ୍ୟ ବିନୋବାଜୀଂକ ଆଂଧ୍ର ପ୍ରଦେଶ ପଦଯାତ୍ରାରେ ଗଲୁ ରାଜମହେଂଦ୍ରି ଯାଏ । ସେଠାରୁ ଆମେ ତିନିଜଣ କୋରାପୁଟ ଜିଲ୍ଲାକୁ ଫେରି ଆସିଲୁ ।

## ଗ୍ରାମଦାନ କର୍ମୀ ହେଲି

କୋରାପୁଟ ଜିଲ୍ଲାରେ ବ୍ୟାପକ ଭାବରେ ହୋଇଥିବା ଗ୍ରାମଦାନ ଭୂଦାନରେ ଭୂମିହୀନଂକୁ ଭୂମି ବାଂଟିବା, ଗ୍ରାମସଭା ଗଠନ କରିବା, ଗାଁର କଳିଗୋଳ ଗାଁରେ ଭାଂଗିବା, ନିଶାମୁକ୍ତି କରିବା କାର୍ଯରେ ଲାଗି ପଡ଼ିଲୁ । କୋରାପୁଟ ଜିଲ୍ଲାକୁ ଜିଲ୍ଲାଦାନ ଘୋଷଣା କରାଯିବା ଉଦେଶ୍ୟରେ ଏକ ବିରାଟ ସାଧାରଣ ସଭା ଜୟପୁର ଠାରେ ଡକାଗଲା । ସେ ସଭାରେ ମୁଖ୍ୟ ଅତିଥି ଭାବରେ ଶ୍ରୀ ଶଂକରରାଓ ଦେଓ ଏବଂ ଅନ୍ୟ ବିଶିଷ୍ଟ ସର୍ବୋଦୟ ନେତା ଯୋଗ ଦେଇଥିଲେ । ଏ ସଭାରେ କୋରାପୁଟ ଜିଲ୍ଲାକୁ ଜିଲ୍ଲାଦାନ ଭାବରେ ଘୋଷଣା କରାଗଲା ।

ପୂ. ଗୋପବଂଧୁ ଚୌଧୁରୀ, ମା ରମାଦେବୀ, ଆଚାର୍ଯ ହରିହର ଦାସ, କୃପାସିଂଧୁ ହୋତା, ମନମୋହନ ଚୌଧୁରୀ, ମାଳତୀ ଚୌଧୁରୀ ଓ ନବକୃଷ୍ଣ ଚୌଧୁରୀଂକ ମାର୍ଗଦର୍ଶନରେ ବଂଟନ, ନବନିର୍ମାଣ କାର୍ଯ କୋରାପୁଟ ଜିଲ୍ଲାରେ ଆରଂଭହେଲା । ସର୍ବସେବା ସଂଘ ପକ୍ଷରୁ ଆଣ୍ଣାସାହେବ ସହସ୍ରବୁଦ୍ଧେ ଗ୍ରାମଦାନ ଗ୍ରାମର ନିର୍ମାଣ କାର୍ଯ କରିବାକୁ ଆସି ପହଂଚିଗଲେ । ଆମ କର୍ମୀମାନଂକୁ ଗୋଟିଏ ଗୋଟିଏ କ୍ଷେତ୍ରରେ ଗ୍ରାମଦାନୀ ଗ୍ରାମର ନିର୍ମାଣ କାର୍ଯ୍ୟ କରିବାକୁ ପଠାଇ ଦିଆଗଲା ।

କୋରାପୁଟ ଜିଲ୍ଲାର ଭୀଷଣ ବଣଜଂଗଲ ଘାଟି ପାହାଡ଼ ଘେରା ମଧ୍ୟରେ ଆଦିବାସୀ ଗାଁମାନ ଅଛି । ଏ ବଣଜଂଗଲ ଘାଟି ଘେରରେ ଥିବା ଆଦିବାସୀମାନଂକୁ ଆଂଧ୍ର ପ୍ରଦେଶର ଧନୀ ସାହୁକାର ଲୋକ ନାନା ପ୍ରକାର ଶୋଷଣ କରି, ଠକି ତାଂକ ଖାଦ୍ୟଶସ୍ୟ ନେଇ ଯାଉଥାଆଂତି । ସରକାରୀ କର୍ମଚାରୀ - ଯଥା ପୁଲିସ, ଫରେଷ୍ଟ,

ରେଭିନ୍ୟୁ ବିଭାଗର କର୍ମଚାରୀ - ଆଦିବାସୀଂକୁ ଡ଼ରଭୟ ଦେଖାଇ ନାନା ବାଟରେ ଶୋଷଣ କରୁଥାଆଂତି । ଶୋଷଣର ଧାରା କିପରି ଥାଏ ତା ଗାଁମାନଂକରେ ବୁଲି ଓ ସମସ୍ତ ଘଟଣା ଶୁଣି ଆଖିରେ ପ୍ରତ୍ୟକ୍ଷ ଦେଖିଲୁ । ଗୋପବଂଧୁ ଚୌଧୁରୀ ଓ ଉପର ଲିଖିତ ବିଶିଷ୍ଟ ସର୍ବୋଦୟ ନେତାମାନଂକ ବୈଠକରେ ଏ ଶୋଷଣରୁ ମୁକ୍ତି ପାଇବାକୁ ଆଦିବାସୀମାନେ କି ପ୍ରକାର ପ୍ରତିରୋଧ କରିପାରିବେ ତାହାର ମାର୍ଗଦର୍ଶନ କର୍ମୀମାନଂକୁ ଦିଆଯାଉଥାଏ । ଆମେ ନିଜନିଜର ବୁଦ୍ଧିମତେ କେତେକ ପଦକ୍ଷେପ ନେବାକୁ ଉଦ୍ୟମ କରି ସଫଳ ହୋଇପାରୁଥାଉ । ସର୍ବୋଦୟ ନେତୃବୃଂଦ ପଦଯାତ୍ରାଦ୍ୱାରା ଆମକୁ ଉତ୍ସାହିତ କରୁଥିଲେ । ମୁଁ ପାଡୁଆ କ୍ଷେତ୍ରରେ କାମ କଲି, ଅନାଦି ଦାସ ପଟାଂଗି, କୃଷ୍ଣ ସିଂହ ସିମିଳିଗୁଡ଼ା, ବୃନ୍ଦନାଥ ମଳିକ ନନ୍ଦପୁର କ୍ଷେତ୍ରରେ । ଆମେ ଚାରିଜଣ ଟାଣୁଆ କର୍ମୀ ପଟାଂଗୀ ନିର୍ବାଚନ କ୍ଷେତ୍ରରେ ଏକଜୁଟ ହୋଇ କାମ କରୁଥାଉ । ଏଠାରେ ଗୋତି ପ୍ରଥା ଚାଲିଥାଏ । ଆଦିବାସୀମାନଂକୁ ପୁଲିସ, ଫରେଷ୍ଟରମାନେ କେସ୍, କୋର୍ଟ ଓ ଜେଲଯିବାର ଭୟ ଦେଖାଇ ଶହ ଶହ ଟଂକା ଠକି ନେଉଥାଆଂତି । ଆଦିବାସୀମାନଂକ ପାଖରେ ଟଂକା ନଥାଏ । ସେ ନିରୁପାୟ ହୋଇ ଧନୀ ସାହୁକାରମାନଂକ ପାଖକୁ ଯାଇଁ ଧାରରେ ଟଂକା ଆଣି ପୁଲିସ, ଫରେଷ୍ଟରଂକୁ ଦିଅନ୍ତି । ଧନୀ ଲୋକମାନେ ଆଦିବାସୀଂକୁ ତିନି ବାଟରେ ଠକଂତି: (୧) ଶହେ ଟଂକା କରଜ ଦେଲେ ବର୍ଷ ଶେଷରେ ଶହେ ଟଂକା ସାଂଗକୁ ଶହେ ଗୌଣୀ ଧାନ ବା ମାଂଡ଼ିଆ ନେବେ; (୨) ଛିଡିଣୀ, ମାନେ ଶହେ ଟଂକା ନେଲେ ବର୍ଷଶେଷରେ ଦିଶହ ଟଂକା ଆଣିଦେବେ; (୩) ହାଟ କଳଂତର, ମାନେ ଏ ହାଟ ପାଳିରେ ଯଦି ଶହେ ଟଂକା ନେବେ ଆସଂତା ହାଟପାଳିରେ ଦୁଇଶହଟଂକା ଦେବେ । ଧାନ ମାଂଡ଼ିଆ, କୋଡ଼ିଏ ମାଣ ଉଧାର ନେଲେ ଛଅ ମାସ ଭିତରେ ଆଦିବାସୀର ଧାନ ମାଂଡ଼ିଆ ଅମଳ ହେଲେ ଚାଳିଶ ମାଣ ଆଣି ଦେବେ ସାହୁକାରକୁ । ଏ ସବୁ ଋଣ ଠିକ୍ ସମୟରେ ସୁଝି ନପାରିଲେ ସାହୁକାର ଘରେ ଗୋତି ଶ୍ରମିକ ଭାବରେ ବର୍ଷ ବର୍ଷ ଧରି ଖଟିବାକୁ ହୁଏ । ଟଂକାର ଚକ୍ରବୃଦ୍ଧି ହିସାବରେ ବାପ ପୁଅ ନାତି ଯାଏ ଗୋତି ଖଟିବାକୁ ହୁଏ, ତଥାପି ଏ ଋଣ ସୁଝି ହୁଏ ନାହିଁ ।

ଆଦିବାସୀ ଋଣ କାହିଁକି କରଂତି? ତାଂକର ବିଭାଘରରେ କନ୍ୟା ଘରକୁ ଭୋଜୀ ଦେବା, କନ୍ୟାର ବାପ ମାଂ'କୁ ଝୋଲା ବା ଯୌତୁକ ଦେବା, ନିଶାସକ୍ତ ହୋଇଥିଲେ ମଦ ପାଇଁ ଟଂକା ଧାର ନେବା । ସୁଝି ନ ପାରିଲେ ସାହୁକାର ଘରେ ଗୋତି

ଶ୍ରମିକ ଭାବରେ ଖଟଂତି ।

ଥରେ ଦାନ ଜମି ବାଂଟିବାକୁ ଏକ ଆଦିବାସୀ ଗାଁକୁ ଜଣେ ଅମିନକୁ ସାଂଗରେ ନେଇ ଗଲି । ସେ ଗାଁରେ ଜଣେ କଂଧ ଆଦିବାସୀ ତାଂକ ଜମି ପଟ୍ଟା ଦେଖେଇଲେ । ପଟ୍ଟାରେ ଦେଖିଲୁ ପଚିଶି ଏକର ଜମି ଅଛି - ପାହାଡ଼ିଆ ଢିପ ଜମି କୋଡ଼ିଏ ଏକର ଆଉ ଧାନଜମି ପାଁଚ ଏକର । ଆଦିବାସୀକୁ ପଚାରିଲୁ, ଏ ପଚିଶି ଏକର ଜମି ତୋର ସବୁ ଅଛି? ସେ କହିଲା, ପାଁଚ ଏକର ଧାନ ଜମିକୁ ଆମ ଗାଁର ଶୁଂଢ଼ି ସାହୁକାର ଦଶବର୍ଷ ହେଲା ଖାଉଛି । କାହିଁକି ସାହୁକାର ଧାନ ନେଇ ଖାଉଛି? ସେ କହିଲା, ଥରେ ରାତିରେ ଆମ ଘରକୁ କୁଣିଆ ଆସିଲେ । ଶାଗ ପରିବା କିଛି ନଥିବାରୁ ସାହୁକାର ଘରକୁ ଯାଇ ପାଂଚୋଟି କୁକୁଡ଼ାଅଂଡ଼ା ଆଣି କୁଣିଆକୁ ତରକାରୀ କରି ଖୁଆଇଲି । ସାହୁକାର ଅଂଡ଼ାର ପଇସା ମୋତେ ମାଗିଲେ ନାହିଁ, ମୁଁ ବି ଦେବାକୁ ଭୁଲିଗଲି । ସାହୁକାର ଦି ବର୍ଷ ପରେ ମତେ ଘରକୁ ଡକାଇ କହିଲେ ପାଁଚୋଟି କୁକୁଡ଼ା ଅଂଡ଼ା ନେଇଥିଲୁ, ତା'ର ପଇସା ଦେଲୁ ନାହିଁ । ଏବେ ଦିବର୍ଷ ହୋଇଗଲାଣି । ପାଂଚଟି ଅଂଡ଼ାରୁ ପାଂଚଟି କୁକୁଡ଼ା ହୋଇ ଥାଆଂତେ । ସେ ପାଂଚଟି କୁକୁଡ଼ା କୋଡିଏଟି ଲେଖା ଅଂଡ଼ା ଦେଇଥାଆଂତେ । ସେଥିରୁ ଶହେ କୁକୁଡ଼ା ହୋଇଥାଆଂତେ । ଏ ପ୍ରକାର ହିସାବ କରିଦେବାରୁ ମୁଁ ନିରୁପାୟ ହୋଇ ଦଶବର୍ଷ ହେଲା ଧାନଜମି ଦେଇଚି, ସେ ତହିଁରୁ ବର୍ଷକୁ ଶହେ ବସ୍ତା ଧାନ ଖାଉଛି । ଏକଥା ଶୁଣି ଆମେ ସେ ଶୁଂଢ଼ି ସାହୁକାରକୁ ଡକାଇ ଦଶବର୍ଷର ଧାନର ହିସାବ କରି ଟଂକା ମାଗିଲୁ । ସାହୁକାର ଜମି ଆଦିବାସୀକୁ ଛାଡିଦେଲା ଏବଂ ପାଂଚଶହ ଟଂକା ଆଦିବାସୀକୁ ଦେଲା ।

ଗୋତିମୁକ୍ତି ଆନ୍ଦୋଳନ କରି ସାହୁକାରଂକ ଘରୁ ଗୋତି ଶ୍ରମିକ ଭାବେ ଦି ତିନି ପୁରୁଷ ଖଟିଥିବା ସ୍ତ୍ରୀ ପୁରୁଷଂକୁ ତାଂକ ଦୈନିକ ମଜୁରି ହିସାବ କରି ସାହୁକାରମାନଂକ ଘରୁ ମୁକ୍ତ କରି ସରକାରୀ ଅନାବାଦୀ ଭୂମିରେ ଗୋତି କଲୋନୀ କରି ରଖାଗଲା । ବେଠି ପ୍ରଥାରେ ଆଦିବାସୀମାନେ ବହୁତ କଷ୍ଟ ପାଉଥିଲେ । ଜୟପୁର ରାଜା ଆଦିବାସୀମାନଂକୁ ଡକାଇ ନେଇ ମାସେ-ପଂଦରଦିନ ଲେଖା ଜୟପୁରଠାରେ ରଖାଇ ବେଠିରେ ପୋଖରୀ ଖୋଳାଉଥିଲେ । ଗାଁମାନଂକରେ ପୁଲିସ, ଫରେଷ୍ଟର ଓ ରେଭିନ୍ୟୁବାଲା ବେଠିରେ ଆଦିବାସୀଂକଠାରୁ କାଠ ନେଇ ଜାଳୁଥିଲେ । ଥରେ ଗିର୍ଲାଗୁଡ଼ା ଗାଁର ତିରିଶ ଘର କଂଧ ଦଶ ମାଇଲ ବାଟରୁ ତିରିଶ ଭାର କାଠ ମୁଂଡ଼ରେ ବୋହି ଫରେଷ୍ଟର ବାବୁଂକ ଘରକୁ

ବେଠିରେ ଦେବାକୁ ଯାଉଥିଲେ । ଅନାଦିବାବୁ ଓ ମୁଁ ବାଟରେ ଏ କାଠ ଭାର ଦେଖି ଆଦିବାସୀଂକୁ ପଚାରିଲୁ, ଗାଁ ଗୋଟାକର ଲୋକ ଏତେ କାଠ ଧରି କୁଆଡେ ଯାଉଚ଼ । ଗ୍ରାମବାସୀ କହିଲେ, ଫରେଷ୍ଟବାବୁଂକ ଘରେ ବେଠିରେ ଦବାକୁ କାଠ ନେଉଚୁ । ଆମେ କାଠକୁ ସେଇଠି ରଖିଲୁ । ଆଦିବାସୀଂକୁ କହିଲୁ, ଦେଶ ସ୍ୱାଧୀନ ହେଲା । ଏ ବେଠି ଚାଲିଥିବ, ନାଁ ଆମେ ଏ କାଠ ଭାର କାଂଧେଇ ତମ ସାଂଗରେ ଫରେଷ୍ଟର ଘରକୁ ନବୁ । ଅନାଦି ବାବୁ ଭାରେ, ମୁଁ ଭାରେ ବଡ଼ କଷ୍ଟରେ କାଂଧେଇ ଫରେଷ୍ଟର ଘରେ କାଠ ପହଂଚାଇଲୁ । ଫରେଷ୍ଟର ବାବୁ ମୋତେ, ଅନାଦି ବାବୁଂକୁ ଦେଖି ଭୟରେ କହିଲେ, ଆପଣମାନେ କ'ଣ କାଠ ବୋହି ଆଣିଲେ? ଆମେ କହିଲୁ, ଆପଣମାନେ ଆଦିବାସୀଂକ ଠାରୁ ବେଠି ନେଉଛଂତି । ଏ ବେଠି ନେବା କଥା କଲେକ୍ଟରଂକୁ, ଉପର ଅଧିକାରୀଂକୁ ଦରଖାସ୍ତ ଲେଖି ଜଣାଇବୁ । ଫରେଷ୍ଟର କ୍ଷମା ମାଗିଲେ । ସେତେବେଳେ କାଠଭାର ଚାରିଅଣା ଲେଖା ଥିଲା । ଫରେଷ୍ଟରଂକୁ କହିଲୁ, କାଠର ଦାମ୍ ଆଦିବାସୀଂକୁ ଦେଇଦିଅ । ସେ ଦେଇଦେଲେ । ସେବେଠୁଁ ଏ ବେଠି ବଂଦହେଲା ।

ପାତୁଆ ଥାନା ସବ୍‌ଇନ୍‌ସ୍‌ପେକ୍ଟର ବାବୁ ଜଣେ କନେଷ୍ଟବଳକୁ ଗାଁ କୁ ଗାଁ ପଠାଇ ଦିଅଣା ପଇସା ଥାନାବାବୁଂକ ଆଡୁ ଗାଁର ମୁଖିଆ ନାୟକଂକୁ ଦେଇ ଯାଆଂତି । କନେଷ୍ଟବଳ ଗାଁର ନାୟକକୁ କହେ, ଆଠ ଆଂଗୁଳି ଶିଂଗ ଉଠିଥିବା ବଡ଼ ଛେଳି ପଠାଇବ, ନହେଲେ ଇନ୍‌ସ୍‌ପେକ୍ଟରବାବୁ ରାଗିବେ । ଗାଁର ନାୟକ ଗାଁଲୋକଂକୁ ଡକାଇ ଛେଳି କିଣି ଥାନାକୁ ପଠାଂତି । ଆମେ ଗୋଟିଏ ଗାଁର ଲୋକଂକ ସାଂଗରେ ବେଠି ଛେଳି ନେଇ ଥାନାକୁ ଗଲୁ । ସେଇ ଦିନଠାରୁ ବଂଦହେଲା ଛେଳି ବେଠି । ଥାନାବାବୁ ଲଜ୍ଜିତ ହେଲେ । ଆମେ ଗାଁଲୋକଂକୁ ମିଟିଂରେ ସବୁ କହିଲୁ - ବେଠି ପ୍ରଥା ଉଠିଗଲାଣି, କେହି କାଠ, ଛେଳି ବେଠି ଦେବନାହିଁ ।

ବିଶେଷକରି ଫରେଷ୍ଟର, ପୁଲିସ ଆଦିବାସୀଂକ ଉପରେ ମିଥ୍ୟା କେସ୍ କରି କୋର୍ଟକୁ ପଠାଇ ଦିଅଂତି । କୋର୍ଟରେ ଆଦିବାସୀ ପହଂଚି ଦରଖାସ୍ତ ଲେଖେଇବାକୁଗଲେ ପିଟିଶନ୍ ଲେଖକ କହନ୍ତି ତିନି ପ୍ରକାର କାଗଜ ଅଛି: ଧଳା କାଗଜରେ ଲେଖି ଦେଲେ ସାହେବ ଟିକିଏ ଦେଖି ରଖିଦେବେ । ଏ କାଗଜରେ ଦରଖାସ୍ତ ଲେଖିଲେ ପଚାଶ ଟଂକା ପଡ଼ିବ । ତା ଠାରୁ ଟିକିଏ ହଳଦିଆ ରଂଗର କାଗଜ ଅଛି, ସେ କାଗଜରେ ଦରଖାସ୍ତ ଲେଖିଲେ ସାହେବ ଟିକିଏ ପଢ଼ିବେ । ଏ କାଗଜ ଶହେ ଟଂକା ହେବ । ଆଉ ଗୋଟିଏ

କାଗଜ ରଂଗ କାଗଜ ଅଛି । ଏ କାଗଜରେ ଦରଖାସ୍ତ ଲେଖିଲେ ସାଂଗେ ସାଂଗେ ସାହେବ ଡାକି ତୋ କାମ କରିଦେବେ । ମାତ୍ର ଏ କାଗଜରେ ଦରଖାସ୍ତ ଲେଖିଲେ ଦିଶହ ଟଂକା ପଡ଼ିବ । ତଟେ ବାରଂବାର କୋର୍ଟକୁ ଦୌଡ଼ିବାକୁ ପଡ଼ିବ ନାହିଁ । ଗୋଟିଏ ଦୁଇଟି ବାଇଦାରେ ତୋ କାମ ସରିଯିବ । ଆଦିବାସୀ କହିବ, ବାବୁ ଦୁଇଶହ ଟଂକା ଦେବି, ଏ ରଂଗ କାଗଜରେ ଲେଖି କେସ୍ ଶୀଘ୍ର ତୁଟେଇ ଦେ । କୋର୍ଟ କଚେରିରେ ପିଟିଶନ୍ ଲେଖିବା ଲୋକ ବହୁତ ବାଟରେ ଠକି ନେଉଥିଲେ । ସଭା ସମିତି କରି ବୁଝାଇ ଦେଲୁ, କେବଳ ଧଳା କାଗଜରେ ଦରଖାସ୍ତ ଲେଖାଯାଏ । ରଂଗ କାଗଜ କଥା କହି ତମଠାରୁ ଟଂକା ଠକି ନିଅଂତି । ଏ ପ୍ରଥା ବଂଦ କରାଇଲୁ ।

ସବୁ କ୍ଷେତ୍ରରେ ଏ ପ୍ରକାର ଅନ୍ୟାୟ ଶୋଷଣ କରିବା ବିରୋଧରେ ଆଦିବାସୀଂକୁ ସଭା ସମିତି ଦ୍ୱାରା ସଚେତନ କରିବାଟା ଜାରିରଖିବା ଦେଖି ଧନୀ ସାହୁକାର ଓ ସରକାରୀ କର୍ମଚାରୀ ଏକଜୁଟ ହୋଇ ଆଦିବାସୀଂକୁ କୁଶିକ୍ଷା ଦେଲେ । କହିଲେ, ଏ ଭୂଦାନ କର୍ମୀମାନେ କୌଶଳ କରି ତମମାନଂକ ଜମି ନେଲେ । ତମକୁ ପୋଡିରେ ମାପକରି ଚାଉଳ ଦେବେ । ଗାଁଟା ସାରା ଗୋଟିଏ ଜାଗାରେ ରାଂଧିବ, ଜାତି ଧର୍ମ କିଛି ଏମାନଂକର ନାହିଁ, ଗୋଟିଏ ପତ୍ରରେ ସମସ୍ତଂକୁ ଖୋଇବେ । ତମ ଝିଅ ମାଇଜୀକୁ ନେଇ ତାଂକ କଟକ, ପୁରୀ ଦେଶରେ ବିକ୍ରି କରିଦେବେ । ସାହୁକାର ଆଦିବାସୀଂକ ସୁଖ ଦୁଃଖରେ ଶହଶହ ବର୍ଷ ହେବ ଧାର କରଜ ଦେଇ ଆସୁଥିବାରୁ କେତେକ ଗ୍ରାମବାସୀ ତାଂକ କଥାକୁ ମାନୁଥିଲେ । ସେ ଗ୍ରାମବାସୀ ଆମ ଭୂଦାନ ଗ୍ରାମଦାନ କାର୍ଯର ବହୁତ ବିରୋଧ କଲେ, ସାହୁକାର ଓ ସରକାରୀ କର୍ମଚାରୀଂକ କଥାକୁ ଶୁଣି । ଆଦିବାସୀ କର୍ମୀମାନଂକ ସାଂଗରେ ବାରଂବାର ବୁଝାଇବାରୁ ଗାଁଲୋକେ ସାହୁକାର ଏବଂ ସରକାରୀ କର୍ମଚାରୀଂକ କୁଶିକ୍ଷାକୁ ଛାଡ଼ି ଭୂଦାନ ଗ୍ରାମଦାନରେ ସାମିଲ ହେଲେ ।

ଆମେମାନେ ସଭା ସମିତି ଦ୍ୱାରା ବୁଝାଇ ଗାଁ ଗାଁରେ କୋଠ ପାଂଠି କରାଇଲୁ, ଗାଁ ଗାଁରେ କୋଠ ଜମି ରଖି ଡ଼ଂଗର ତଳପଟ ଜମିରେ କୋଠ ଚାଷ କରାଇଲୁ । ସେମାନଂକ ସାଂଗରେ ହଳ କରି, କୋଦାଳରେ ଡଂଗର ହାଣି ଚାଷ କରି, ଶହ ଶହ ବସ୍ତା ଧାନ ମାଂଡ଼ିଆ ଗାଁରେ କୋଠଘର ପାଂଠିରେ ରଖି, ସାହୁକାର ଘରୁ ଧାରକରଜ ଆଣିବା ବଂଦ କରାଇଲୁ ।

# ଭୂଦାନ କର୍ମୀଂକ ନିଧିମୁକ୍ତି

୧୯୫୭କୁ ପୂଜ୍ୟ ବିନୋବାଜୀ ଘୋଷଣା କଲେ କର୍ମୀମାନେ ସଂସ୍ଥା-ନିଧିମୁକ୍ତିରେ ଭୂଦାନ ସର୍ବୋଦୟ କାମ କରିବେ । ସଂସ୍ଥା ନାହିଁ କି ନିଧି ନାହିଁ । ଲୋକଂକ ଆଧାରରେ ଚଳିବେ । ଅଳ୍ପ କିଛି କିଛି ସାହାଯ୍ୟ ଚଳିବାକୁ ମିଳୁଥିଲା, ସେତକ ବଂଦ୍ ହୋଇଗଲା । କିପରି ଚଳିବା ଏ ଚିଂତାରେ ପଡିଗଲୁ । କେତେକ କର୍ମୀ ଛାଡ଼ି ଚାଲିଗଲେ । ମୁଁ ମଂଗଳା ମାଉସୀଙ୍କ ପରାମର୍ଶରେ ରାୟଗଡ଼ା ସହରରେ ପ୍ରତ୍ୟେକ ଘରେ ସର୍ବୋଦୟପାତ୍ର ବୋଲି ଗୋଟିଏ ଲେଖା ଛୋଟ ମାଟି ହାଂଡ଼ି ଦେଇ ବୁଝାଇ କହିଲି, ଛୋଟ ପୁଅ ଝିଅଂକ ହାତରେ ମୁଠାଏ ମୁଠାଏ ଚାଉଳ ଏ ପାତ୍ରରେ ପକାଇବେ । ମାସରେ ଥରେ ଏ ଚାଉଳ ନେଇ ଆମେ କର୍ମୀମାନେ ଚଳିବୁ । ବଡ କଷ୍ଟରେ ଏଥିରେ ଆମମାନଂକୁ ଚଳି କାମ କରିବାକୁ ପଡୁଥାଏ ।

ବଣ ଜଂଗଲ ଘାଟି ପାହାଡ଼ ଘେରା ପଂଦର କିଲୋମିଟର ଦୂର ଦେବଡିଗୁଡ଼ା ଗୋଟିଏ ଆଦିବାସୀ ଗାଁ । ସେ  ଗାଁ ଜଂଗଲରେ ଗୋଟେ ପୁରୁଣା ଚଂପାଗଛ ପବନରେ ଉପୁଡ଼ି ପଡିଥିଲା । ସେ ଗାଁର ଜଣେ ଆଦିବାସୀ ଉକ୍ତ ଗଛକୁ କାଟି କବାଟ, ଦୁଆରବଂଧ ଇତ୍ୟାଦି କଲେ । ଫରେଷ୍ଟର ବାବୁ ସେ ଆଦିବାସୀଂକୁ ଡ଼କାଇ କେସ୍ କରିବା ଭୟ ଦେଖାଇ ଆଦିବାସୀଠାରୁ ପାଁଚଶହ ଟଂକା ବିନା ରସିଦରେ ନେଲେ । ଏ ଘଟଣା ଆମକୁ ଗ୍ରାମବାସୀ କହିବାରୁ ଫରେଷ୍ଟବାବୁଂକୁ ବହୁତ ବୁଝାଇ କହିଲୁ ଉକ୍ତ ଟଂକା ଆଦିବାସୀକୁ ଫେରାଇ ଦେବାକୁ । ଫରେଷ୍ଟବାବୁ ଟଂକା ନ ଫେରାଇବାରୁ ତାଂକ ଉପର ଅଧିକାରୀ ରେଂଜରଂକୁ ଦରଖାସ୍ତ ଦିଆଗଲା । ରେଂଜର ବାବୁ ଇନ୍‌କ୍ୱାରୀ କରିବାକୁ ସମୟ ତାରିଖ ଜଣାଇ ଦେଲେ । ଇନ୍‌କ୍ୱାରୀ ଦିନ ଆଖ ପାଖ ଗ୍ରାମରୁ ପ୍ରାୟ ତିନିଶହ ଜଣ ଆଦିବାସୀ ଆସିଥିଲେ । ଆମ କର୍ମୀମାନଂକ ମଧ୍ୟରୁ ମୁଁ,  ଅନାଦି ଦାସ, ବୃନ୍ଦନାଥ ମଳିକ, ରାଜକିଶୋର ଜେନା ଏବଂ ସ୍ଥାନୀୟ କର୍ମୀ ପଂଦର ଜଣ ଯାଏ ଯୋଗ ଦେଇଥିଲୁ । ଇନ୍‌କ୍ୱାରୀରେ ପ୍ରମାଣିତ ହେଲା ଯେ ଫରେଷ୍ଟର ବିନା ରସିଦରେ ଆଦିବାସୀଂକ ଠାରୁ ଟଂକା ଆଣିଛଂତି । ତାଂକ ବିରୋଧରେ କାର୍ଯାନୁଷ୍ଠାନ ଗ୍ରହଣ କରାଯିବ । ଦୂରରୁ ଆସିଥିବା ଲୋକମାନେ ଇନ୍‌କ୍ୱାରୀ ସରୁ ସରୁ ସଂଧ୍ୟା ଛଅଟା ହୋଇଗଲାରୁ ଘରକୁ ଯାଇପାରିଲେ ନାହିଁ । ଏପାଖ ଗ୍ରାମ କୁଲାବିରାଠାରେ ରହିଲେ । ପାତୁଆ ଗ୍ରାମର ଜଣେ ଧନୀ ଲୋକ

କୌଶଳ କରି ମୋତେ, ଅନାଦି ବାବୁଙ୍କୁ, ରାଜକିଶୋର ବାବୁଙ୍କୁ ଏବଂ ସ୍ଥାନୀୟ କର୍ମୀ ଧନିଆ ବଡ଼ନାୟକଙ୍କୁ ଡାକି ତାଂକ ପିଂଢ଼ାରେ ବସାଇ ଫରେଷ୍ଟର ଇନ୍‌କ୍ୱାରୀ କଥା ପଚାରି ବୁଝୁ ବୁଝୁ ରାତି ଆଠଟା ହୋଇଗଲା । ଅଂଧାର ରାତି, ଲଂଠନଟିଏ ଧରିଥିଲୁ, ତାକୁ ଲଗାଇ ନଇ ପୋଲ ପାର ହୋଇ ଚାରିଜଣଯାକ ଚାଲିଥାଉଁ । କର୍ମଚାରୀ ଓ ଧନୀ ଲୋକମାନେ ଆଂଧ୍ରରୁ ଗୁଂଡ଼ା ଆଣି ଆମକୁ ମାଡ଼ ମାରିବାକୁ ଢଗାଇଥିବା କଥା ଆମକୁ ଜଣା ନଥିଲା । ଗାଁ ଛାଡ଼ି ଅଧ ମାଇଲି ବାଟ ଅଂଧାରରେ ଚାଲିଚୁ, ଗୁଂଡ଼ାମାନେ ହଠାତ୍ ବଣରୁ ବାହାରି ଆମ ଚାରିଜଣଂକୁ ବିଧା ଗୋଇଠା ଓ ବାଡ଼ିରେ ବାଡ଼େଇବା ଆରଂଭ କରିଦେଲେ । ପ୍ରଥମ ଲଂଠନଟି ବାଡେଇ ଭାଂଗିଦେଲେ, ତାପରେ ଅଂଧାର ହେବାରୁ ବାଡ଼ିରେ ବାଡେଇଲେ । ମାଡ଼ରୁ ରକ୍ଷା ପାଇବାକୁ ମୋ ବେଡ଼ିଂଟି ଦେଖାଇଲି । ବେଡିଂ ଉପରେ ପାହାର ବସୁଥାଏ । ବ୍ୟାଗରୁ ଟର୍ଚ୍ଚ କାଢି ମାରିଲି ଦେଖିବାକୁ । ହାତଉପରେ ମାଡ଼ ହେଲା, ମୋ ବାଁହାତ ଆଂଗୁଳିରେ ମାଡ଼ ବାଜି ଆଂଗୁଳି ଫାଟି ରକ୍ତ ବୋହିଲା, ଟର୍ଚ୍ଚଟି କେଣେ ପଡ଼ିଗଲା । ବେତ ବେଂଟ ମଜବୁତ ଛତାଟି କାଂଧରେ ଓହୋଳେଇ ଥିଲି, ମନେ ପଡ଼ିଗଲା । ଛତାବେଂଟ ପଛ ପାଖରୁ ଧରି ବଂକା ବେଂଟବାଟେ ଜଣକୁ ପିଟିଲି । ଆମେ ଚାରିଜଣଯାକ ଏଣେ ମାଡ଼ରେ ଅସ୍ତବ୍ୟସ୍ତ ହୋଇ ରକ୍ଷାକର ରକ୍ଷାକର ବଡ଼ ପାଟିରେ ଡ଼ାକିବା ସାଂଗେ ସାଂଗେ ଜୋରଦାର ପ୍ରତିରୋଧ କରୁଥାଉଁ । ମୁଁ ଛତାରେ ପିଟିବାରୁ ମତେ ଛାଡ଼ିଦେଇ ଅନାଦି ବାବୁଂକୁ, ରାଜକିଶୋର ବାବୁଂକୁ ଓ ଧନିଆ ବଡ଼ନାୟକକୁ ବାଡ଼େଇବାର ଦେଖିଲି । ଅନାଦିବାବୁ ମାଡ଼ରୁ ରକ୍ଷା ପାଇବାକୁ ଓ ମୁଂଡ଼କୁ ରକ୍ଷା କରିବାକୁ ଦିହାତକୁ ଉପରକୁ ଦେଖାଇ ବାଡ଼ିମାଡ଼ର ପ୍ରତିରୋଧ କରୁଥାଆଂତି । ଧନିଆଁ ବଡ଼ନାୟକ ମାଡ଼ରେ ବ୍ୟସ୍ତହୋଇ ବାପା, ମରିଗଲି, ମରିଗଲି ଚିତ୍କାର କରୁଥାଆଂତି । ରାଜକିଶୋର ବାବୁ ମାଡ଼ର ପ୍ରତିରୋଧ କରୁଥାଆଂତି । ମୁଁ ଛତା ବେଂଟରେ ଗୁଂଡ଼ାମାନଂକୁ ଗୋଡ଼େଇ ଗୋଡ଼େଇ ବାଡ଼େଇବା ସାଂଗେ ସାଂଗେ ବଡ଼ପାଟିରେ ଡାକୁଥାଏ, କିଏ କେଉଁଠି ଅଛ ଆସି ଆମକୁ ଗୁଂଡ଼ାମାନଂକ କବଳରୁ ରକ୍ଷା କର । ଏ ଅବସ୍ଥାରେ ଗୁଂଡ଼ାମାନେ ଆମକୁ ଛାଡ଼ି ଦୌଡ଼ି ପଳାଇଗଲେ । ଆମେ ଚାରିଜଣ ଯାକ ମାଡ଼ରେ ଆଘାତ ପାଇ ଲହୁଲୁହାଣ ଆବସ୍ଥାରେ କୁଲାବିରି ଗାଁକୁ ଗଲୁ । ସେଠାରେ ରୋଷେଇ କରୁଥିବା ଲୋକମାନେ ଆମର ଏ ଅବସ୍ଥା ଦେଖି ବ୍ୟସ୍ତ ହୋଇପଡ଼ିଲେ । ସାଂଗେ ସାଂଗେ ଶହେଜଣ ଲୋକଂକୁ ସାଥିରେ ନେଇ ପାତୁଆ ଯାଇ ଡାକ୍ତରଖାନାରେ

ପ୍ରାଥମିକ ଚିକିତ୍ସା ହେଲା । ଥାନାରେ ଏକ ରିପୋର୍ଟ ଲେଖିକରି ଦେଲୁ । ଏହି କର୍ମଚାରୀ, ଧନୀଲୋକ ଗୁଂଡ଼ା ଆଣି ମାଡ଼ ମରାଇବା କଥା କରିଛଂତି, ତାଂକୁ ରିପୋର୍ଟ ଦେଲେ କଣ ହେବ, ଏ ପ୍ରକାର ଭାବି ଆମେ ଆଗେଇଲୁ ଏବଂ କାମରେ ଲାଗିଲୁ ।

୧୯୭୨ ମସିହା ଘଟଣା । ଆଦିବାସୀମାନେ ମୁଖ୍ୟତଃ ଡ଼ଂଗର ତଳଅଂଶ ଜମିକୁ କୋଦାଳରେ ହାଣି, ମାଂଡ଼ିଆ ସୁଆଁ ଇତ୍ୟାଦି ଫସଲ କରି ବଂଚନ୍ତି । ମୃତ୍ତିକା କ୍ଷୟ ହୋଇ ଯାଉଛି, ସେ ସାରମାଟିକୁ ରକ୍ଷା କରିବାକୁ ପଥରହିଡ଼ କରିବାର ଲକ୍ଷ ଲକ୍ଷ ଟଂକାର ଏକ ଯୋଜନା ସରକାରଂକ ପକ୍ଷରୁ କରାଗଲା । ପାଡୁଆଠାରେ ଜଣେ ମୃତ୍ତିକା ସଂରକ୍ଷଣ ଆସିଷ୍ଟାଣ୍ଟ ରହି ଏ କାମ କରାଇବେ । ପାଁଚଫୁଟ ଲଂବ ତିନିଫୁଟ ଉଚ୍ଚ ପଥରହିଡ଼ ବାଂଧିଦେଲେ ଠିକାରେ ତିନିଟଂକା ଲେଖା ପାଇବେ ବୋଲି ଘୋଷଣା କରାଗଲା । ମୃତ୍ତିକା ସଂରକ୍ଷଣ ସର୍ଭେଅର୍‌ମାନେ ଗାଁମାନଂକୁ ଆସି ମାପ କରିଦେଲେ । ଆଦିବାସୀ ପରିବାରର ସ୍ତ୍ରୀ, ପୁଅ, ଝିଅ, ସମସ୍ତେ ମିଶି ପଥର ହିଡ଼ ବାଂଧି ଦିନକୁ ଶହେ ଦେଢ଼ଶ ଲେଖା ଟଂକା ମଜୁରି ପାଇଲେ । ପଂଦର କୋଡିଏ ଦିନ ପଥରହିଡ଼ କାମ କରି ଆଦିବାସୀମାନେ ବହୁତ ଟଂକା ମଜୁରି ପାଇବା ଦେଖି କର୍ମଚାରୀମାନେ ଲୋଭରେ ପଡ଼ି ଆଦିବାସୀଂକୁ ଠକିବାକୁ ସ୍ଥିର କରି କହିଲେ, ସରକାର ଏବେ ଅର୍ଡର ପଠେଇଲେ, ପାଁଚ ଫୁଟକୁ ଏକଟଂକା ଲେଖା ମଜୁରି ଦେବେ । ଆଦିବାସୀ ଯୁବକମାନେ ଆସି ଏକଥା ମତେ କହିବାରୁ ମୁଁ ସେମାନଂକୁ ଧରି ପାଡୁଆ ଆସି ଆସିଷ୍ଟାଣ୍ଟଂକୁ ପଚାରି ବୁଝିଲି । କହିଲି, ପଚିଶି ତିରିଶ ଦିନ ମଧ୍ୟରେ ପାଁଚ ଫୁଟକୁ ତିନି ଟଂକା ଦେବାର ମଜୁରି ଜାଗାରେ ହଠାତ୍ ଏକ ଟଂକାର ଅର୍ଡର ପଳାଇ ଆସିଲା ! ସେ ଅର୍ଡର ମୋତେ ଟିକିଏ ଦେଖାଂତୁ । ଆସିଷ୍ଟାଣ୍ଟ ଟିକିଏ ଘାବୁରିଯାଇ ମୋ ସାଂଗରେ ଥାପାଡ଼େଇବା ଭଳି କଥାବାର୍ତା କରି ଟାଳିବାକୁ ବସିଲେ । ମୁଁ ଜାଣିନେଲି ଯେ ଏମାନେ ଆଦିବାସୀଂକୁ ମିଛକଥା କହି ଠକିବାକୁ ବସିଛଂତି । ଆଦିବାସୀମାନେ ଯାଆଂତୁ, ଆପଣଂକ ସାଂଗରେ ମୁଁ ପରେ କଥା ହେବି କହି, ମୋତେ ଆୟତ୍ତ କରିବାର ଉଦ୍ୟମ ଜାରି ରଖିଲେ । ଆସିଷ୍ଟାଣ୍ଟଂକ କଥାରେ ମୁଁ ଆଦିବାସୀ ଯୁବକମାନଂକୁ ପଠାଇ ଦେଇ ଏକୁଟିଆ ରହିଲି । ମୋତେ ଆୟତ୍ତ କରିବା ଉଦ୍ଦେଶ୍ୟ ରଖି ମିଠା ଇତ୍ୟାଦି ଆଣି ମୋତେ ଖୁଆଇଲେ ଏବଂ କହିଲେ, ଦାସବାବୁ, ଆପଣ ଆଦିବାସୀଂକ କଥାରେ କାହିଁକି ପଡୁଛଂତି । ଆପଣ ଆମଆଡ଼କା ଲୋକ, ଆମକୁ ସାହାଯ୍ୟ କରଂତୁ । ମୁଁ କହିଲି, ଦେଖଂତୁ, ସେମାନେ ଏ ଖରାରେ କଠିଣ ପରିଶ୍ରମ କରି

ବଡ଼ ବଡ଼ ପଥର ବୋହି ଏ କାମ କରୁଛଂତି । ତାଂକର ପ୍ରକୃତରେ ମଜୁରି ପାଁଚ ଫୁଟକୁ ତିନି ଟଂକା ହିସାବରେ ଯେମିତି ଦେଉଥିଲେ ସେମିତି ଦେଇ ଦିଅଂତୁ । ତା ନହେଲେ କଥାଟି କଲେକ୍ଟର ଓ ମୁଖ୍ୟମଂତ୍ରୀଂକୁ ଜଣାଇଲେ ଆପଣମାନେ ଅସୁବିଧାରେ ପଡ଼ିବେ, ଚାକିରି ହରାଇ ବସିବେ । ଏ କଥା କହି, ସତର୍କ କରାଇଦେଇ, ମୁଁ ଆସି କାମ କରୁଥିବା ଆଦିବାସୀ ସ୍ତ୍ରୀ ପୁରୁଷଂକୁ ଏକାଠିକରି ବୁଝାଇଲି । ଆଦିବାସୀମାନେ କହିଲେ, ଆଜ୍ଞା, ଆମେ ଆଠ ହଜାର ଟଂକାର ପଥରହିଡ଼ ବାଂଧିଛୁ, ଆମ ମଜୁରି ଆପଣ ମାଗି ଦିଅଂତୁ । ମୁଁ ସର୍ଭେଅର ଓ ଆସିଷ୍ଟାଣ୍ଟକୁ କହିଲି, ଆଦିବାସୀମାନେ ଆଠ ହଜାର ଟଂକା ପାଇବେ ଦାବୀ କରୁଛନ୍ତି । ସର୍ଭେଅର ଓ ଆସିଷ୍ଟାଣ୍ଟ କହିଲେ, ନାଁ, ତିନି-ଚାରି ହଜାର ଟଂକାର କାମ କରିଛଂତି । ମୁଁ କହିଲି, ପଥରହିଡ଼ ସବୁ ମାପ କରିଦେଲେ ଜଣାପଡ଼ିବ । ପଥରହିଡ଼ ମାପ ହେବାରୁ ଜଣାଗଲା ଆଦିବାସୀମାନେ ସାତ ହଜାର ଟଂକା ତାଂକ ମଜୁରି ବାବଦରେ ପାଇବେ । ଏକ ଧଳା କାଗଜରେ ଲେଖାହେଲା । ଆସିଷ୍ଟାଣ୍ଟ କ୍ଷମା ମାଗି କହିଲେ, ଏତେ ଟଂକା ଆମେ କେଉଁଠୁ ଆଣିଦେବୁ, ସବୁ ନାନା ବାଟରେ ଖର୍ଚ୍ଚ ହୋଇଯାଇଛି । ଆମେ ପାଁଚହଜାର ଟଂକା ଦେଇଦେବୁ । ଆଦିବାସୀମାନେ କହିଲେ, ଯାଉ ବାବୁ, ପାଁଚହଜାରରେ ଆଉ ତିନିଶହ ମିଶାଇ ଦେଇଦିଅ । ଏ କଥାକୁ ଆସିଷ୍ଟାଣ୍ଟ ମାନିଗଲେ । ଦଶଦିନ ଭିତରେ ପାଁଚ ହଜାର ତିନିଶହ ଟଂକା ଦେବାକୁ କହିଲେ । ଏକ ଚୁକ୍ତିପତ୍ର ମାପ ଅନୁସାରେ ଲେଖି, ମୋ ଦସ୍ତଖତ୍, ଆସିଷ୍ଟାଣ୍ଟ, ସର୍ଭେଅର ଓ ଆଦିବାସୀ ଯୁବକ ସାତଜଣଂକ ଦସ୍ତଖତ ଦିଆଯାଇ, ଏକ କପି ଆସିଷ୍ଟାଣ୍ଟ ନେଲେ, ଗୋଟିଏ କପି ମୋ ପାଖରେ, ଆଉ ଗୋଟିଏ କପି ଆଦିବାସୀଂକୁ ଦିଆଗଲା । ଏ କଥାଟି ମୁଁ ଆମ ସହକର୍ମୀମାନଂକୁ କହିଲି ଏବଂ ପୂ. ମାଳତୀ ଚୌଧୁରୀ ମଧ୍ୟ ଜାଣିଲେ ।

ଏତେ ଟଂକାର କାମ କରାଇ ଆଦିବାସୀଂକୁ ଠକି ନେଉଥିଲେ, କର୍ମଚାରୀମାନେ ଧରାପଡ଼ିଲେ, ଏବେ ଟଂକା ଫେରାଇବେ, ଏ କଥା ସମସ୍ତେ ଜାଣିଲେ । କଥାଟି ମାଛକୁଂଡ଼ ମୃତ୍ତିକା ସଂରକ୍ଷଣ ବଡ଼ ଅଧିକାରୀ ଶୁଣି ଆସିଷ୍ଟାଣ୍ଟ ସର୍ଭେଅରଂକୁ ଡ଼କାଇ ଗାଳିଦେଇ କହିଲେ, ଜଣେ ଭୂଦାନ କର୍ମୀ ତମମାନଂକୁ ଏବଂ ଆମ ଡିପାର୍ଟମେଂଟକୁ ବଦନାମ କରିଦେଲେ, ଆମ ଡ଼ିପାର୍ଟମେଂଟ ଆଦିବାସୀଂକୁ ଠକି ଟଂକା ଖାଉଛି ବୋଲି । ସେ ଚୁକ୍ତିପତ୍ର ଲେଖାଟି କଳେ ବଳେ କୌଶଳେ ତାଂକ ଠାରୁ ଆଣି ଚିରିଦିଅ । ସେ ଆମର କିଛି କରି ପାରିବେ ନାହିଁ । ଏ ବଦନାମରୁ ଆମ ଡିପାର୍ଟମେଂଟ ରକ୍ଷା ପାଇଯିବ ।

ଆସିଷ୍ଟାଣ୍ଟ ଆସି ମତେ ଡକାଇ କହିଲେ, ନିଶାକରବାବୁ, ଆପଣଂକ ପାଖରେ ଯେଉଁ ମାପ ଚୁକ୍ତିପତ୍ର ଅଛି, ଆମ ଲେଖା ଅନୁସାରେ ଅମେଳ ହେଉଛି. ଆପଣ ଏକୁଟିଆ ସେ କାଗଜ ଧରି ଆମ ଅଫିସକୁ ଆସଂତୁ, ମିଳାଇ ଦେଇ ଟଂକା ନେଇଯିବେ । ମୁଁ ମନେ ମନେ ଭାବିଲି, ଏ ଗୋଟିଏ କୌଶଳ । ଲେଖାଟି ମୁଁ ଏକୁଟିଆ ଧରି ତାଂକ ଆୟତ୍ତକୁ ଆସିଲେ ମୋ ଠାରୁ ଛଡ଼ାଇ ନେବା କୌଶଳ କରିଛଂତି । ମୁଁ କହିଲି, ଆଦିବାସୀମାନେ କାମ କରିଛଂତି, ଉକ୍ତ ମଜୁରି ଟଂକା ସେମାନେ ନେବେ, ମୁଁ ଏକୁଟିଆ ସେ କାଗଜ ଧରି ଆସିବି ନାହିଁ, ସେମାନଙ୍କୁ ସାଂଗରେ ନେଇ ଆସିବି । ଆସିଷ୍ଟାଣ୍ଟ କହିଲେ, ଜଣେ ଦୁଇଜଣ ଆଦିବାସୀଂକୁ ସାଂଗରେ ଆଣିବେ, ସେମାନେ ଆମ ଅଫିସ ଭିତରକୁ ଆସିବେ ନାହିଁ । ଆପଣ, ମୁଁ ଆମ ଅଫିସରେ ବସି ମିଳେଇନେବା । ମୁଁ କହିଲି, ଆଦିବାସୀମାନଂକୁ ପଚାରି ଠିକ୍ କରି ଆସିବି । ଦଶ ଜଣ ଆଦିବାସୀ ଯୁବକଂକୁ ସାଂଗରେ ନେଇ ମୃତ୍ତିକା ସଂରକ୍ଷଣ ଅଫିସକୁ ଗଲି । ଆଦିବାସୀ ଯୁବକମାନଂକୁ କହିକରି ସାଂଗରେ ନେଲି – ଆମ ଚୁକ୍ତିପତ୍ର କାଗଜ ଆସିଷ୍ଟାଣ୍ଟ ଛଡ଼ାଇ ନେବାକୁ ଚେଷ୍ଟା କଲେ ତମେମାନେ ସାଂଗେ ସାଂଗେ ଉଠିପଡ଼ି ଆସିଷ୍ଟାଣ୍ଟକୁ ଧରି ପକାଇବ ଏବଂ କହିବ, ଆମ କାଗଜ ଚିରିଲେ ବା ନେଲେ ତୋତେ ଏବଂ ଏ ଘର ସବୁ ଭାଂଗିଦେବୁ । ଯୁବକମାନଂକୁ ସାଂଗରେ ନେଇ ଅଫିସକୁ ଗଲି । ଆସିଷ୍ଟାଣ୍ଟବାବୁ କହିଲେ, ଚୁକ୍ତି କାଗଜ ଧରି ଆପଣ ଅଫିସ ଭିତରକୁ ଆସଂତୁ, ମିଳାଇ ଦେଖିବା । ମୁଁ କହିଲି ଏମାନଂକ ଟଂକା, ଏମାନେ ଯଦି ନଯିବେ ମୁଁ ଏକୁଟିଆ ଅଫିସକୁ ଯିବିନାହିଁ । ଏଠାରୁ ଆମେ ଫେରି ଯାଉଛୁ । ଆସିଷ୍ଟାଣ୍ଟ ବାଧ୍ୟହୋଇ ସମସ୍ତଂକୁ ଅଫିସ ଭିତରକୁ ଡାକିଲେ । ମୁଁ ଆଦିବାସୀ ଯୁବକମାନଂକୁ ମୋ ପାଖରେ ବସାଇ ଦେଲି । ଝରକା ଆର ପାଖରେ ଜଣେ ସର୍ଭେଅର ଲୁଂଗୁର ପୁଂଗୁର ହୋଇ ବୁଲିବାଟା ଦେଖିଲି । ମୋ ମନରେ ବେଶି ସଂଦେହ ହେଉଥାଏ । ଆସିଷ୍ଟାଣ୍ଟ ଝରକା ପାଖକୁ ଏକ ଚୌକିରେ ବସିଲେ, ମୋତେ ଝରକା କଡ଼କୁ ବସାଇ ମୋ କାଗଜଟି କପି ମିଳେଇବାକୁ କହିଲେ । ମୁଁ ମୋ ଚୁକ୍ତି କାଗଜଟିକୁ ଖୁବ୍ ଜୋରରେ ଧରିଥାଏ ଏବଂ ମିଳାଇବାକୁ ଡାକୁ ଥାଏ । ହଠାତ୍ ଆସିଷ୍ଟାଣ୍ଟ ମୋ ହାତରୁ ଚୁକ୍ତିପତ୍ରଟିକୁ ଧରିପକାଇ ଛଡ଼ାଇବାକୁ ବସିଲାରୁ ଆଦିବାସୀ ଯୁବକମାନେ ଆସିଷ୍ଟାଣ୍ଟଂକ ହାତକୁ ଧରିପକାଇ ଚିତ୍କାରକରି କହିଲେ, କାଗଜ ଛାଡ଼, ଚିରିଗଲେ ତତେ ଶେଷ କରିଦେବୁ । ଆସିଷ୍ଟାଣ୍ଟ ଭୟରେ ମୋ ହାତରେ ଥିବା ଚୁକ୍ତିପତ୍ରଟି ଛାଡ଼ି ଦେଲେ, ଆମେ ସମସ୍ତେ ପଳାଇ ଆସିଲୁ । କହିକରି ଆସିଲୁ, ପାଁଚହଜାର ତିନିଶହ

ଟଂକା ଆସନ୍ତା କାଲି ଦଶଟା ସୁଦ୍ଧା ନଦେଲେ ମୁଖ୍ୟମଂତ୍ରୀ ଓ କଲେକ୍ଟରଂକୁ ଓ ଶ୍ରୀମତୀ ମାଳତୀ ଚୌଧୁରୀଂକୁ ଏକଥା ଜଣାଇବାକୁ ବାଧ୍ୟହେବୁ । ଆସିଷ୍ଟାଣ୍ଟ ବାଧ୍ୟ ହୋଇ ତା ଆରଦିନ ପାଁଚ ହଜାର ତିନିଶହ ଟଂକା ଆଣି ଆମ ପାଖରେ ଦେଇଗଲେ । ଉକ୍ତ ଟଂକା ଆଦିବାସୀଂକୁ ମଜୁରି ମୁତାବକ ବାଂଟି ଦେଲୁ । ଏ ଗୋଟିଏ ବଡ଼ ସଫଳତା ମୋ ଜୀବନରେ ମିଳିଲା ।

ଶ୍ରୀ ନାରାୟଣ ସାହୁ ଜଣେ ଫରେଷ୍ଟର । ପାତୁଆ ଆସି ଆଦିବାସୀ ଗାଁମାନ ବୁଲି ଦେଖିଲେ । ଆଦିବାସୀମାନେ ଚଇତ ବୈଶାଖ ମାସରେ ଜଂଗଲରୁ କାଠ ସଂଗ୍ରହ କରି ରଖଂତି । ବର୍ଷା ଦିନରେ ଉକ୍ତ କାଠକୁ ଜାଳି ରୋଷେଇ କରି ଖାଇ ଚାଷ କାମରେ ଲାଗଂତି । ଫରେଷ୍ଟର ବାବୁ କଣ କଲେ ନା, ଏତେ କାଠ ତମେମାନେ ଜଂଗଲରୁ କାଟି ରଖିଛ, ମୁଁ ଜଙ୍ଗଲର ରଜା, ତମେମାନେ ମୋତେ ଘର ପିଛା ଶହେ ଦୁଇଶହ ଟଂକା ନଦେଲେ ତମମାନଙ୍କ ନାଆଁରେ କେସ୍ କରି ଜେଲକୁ ପଠାଇଦେବି ବୋଲି ଧମକେଇଲେ । ସତକୁ ସତ ଗୋଲୁରୁ ଗାଁର ଜଣେ ଆଦିବାସୀକୁ ଆରେଷ୍ଟ କରି ଜେଲରେ ଦିନେ ଦିଦିନ ରଖି, ଫରେଷ୍ଟର ନିଜେ ଜାମିନରେ ଆଣି ତାକୁ ଘରକୁ ପଠାଇଦେଲେ । ସାରା ପାତୁଆ ଥାନାରେ ଫରେଷ୍ଟର କୋକୁଆ ଭୟ ଦେଖାଇ ଗାଁ ଗାଁରୁ ଚାରି ପାଁଚହଜାର ଲେଖା ଟଂକା ଆଦାୟ କଲେ । ଗାଁର ଆଦିବାସୀମାନେ ମୋତେ କହିଲେ, ଫରେଷ୍ଟର ଅନ୍ୟାୟ ବାଟରେ ବିନା ରସିଦରେ ହଜାର ହଜାର ଟଂକା ଆଦିବାସୀଂକୁ ଡ଼ରାଇ କୋର୍ଟକେସ୍‌ର ଭୟ ଦେଖାଇ ଆଦାୟ କରୁଛଂତି । ମୁଁ ଏକଥା ଶୁଣି କେତେ ଗାଁକୁ ଯାଇଁ ଗ୍ରାମବାସୀଂକୁ ପଚାରି ବୁଝିଲି, ସତ କଥା । କେଉଁ କେଉଁ ଗ୍ରାମରୁ କେତେ ଲେଖା ଟଂକା ନେଇଛଂତି ତା'ର ତଥ୍ୟ ସଂଗ୍ରହ କଲି । ଆଦିବାସୀଂକୁ ବାଂଧି, ମାଡ଼ମାରି ଟଂକା ନେବାଠାରୁ ଆରଂଭ କରି ବହୁତ ପ୍ରକାର ଅନ୍ୟାୟ କରିଥିବା କଥା ସଂଗ୍ରହକରି ଏଠା ପାତୁଆ ହାଟରେ ତିନିଚାରି ହଜାର ଆଦିବାସୀ ସ୍ତ୍ରୀ ପୁରୁଷଂକୁ ଏକାଠି କରି ସଭା କରାଇଲୁ । ପ୍ରୋସେଶନକରି ଫରେଷ୍ଟର ଅଫିସ ଯାଏ ଯାଇ ସେଠାରେ ଫରେଷ୍ଟରବାବୁ କରିଥିବା ଅନ୍ୟାୟ ବିରୋଧରେ ଲୋକେ କହିଲେ । ମୁଁ ଏ ଖବରଟିକୁ ଏଠାକାର ସ୍ଥାନୀୟ ପତ୍ରିକା, ଜନସଖାରେ, କେଉଁ ଗାଁରୁ କେତେ ଲେଖା ଟଂକା ଫରେଷ୍ଟର ବାବୁ ନେଇଛଂତି, ମାଡ଼ ମାରିଛଂତି ଓ କୋର୍ଟକୁ ବାଂଧି ନେଇଚଂତି ସେ କଥା ଲେଖି ବାହାର କରାଇଲି । ଫରେଷ୍ଟର ବାବୁ ମୋ ଉପରେ ରାଗିଯାଇଁ ଗାଁ ଲୋକଂକ ଓ କର୍ମୀମାନଂକ ସାଂଗରେ

ମତେ ମିଶାଇ ନାନା ପ୍ରକାରର ତିରିଶ-ଚାଳିଶ ମିଥ୍ୟା କେସ୍‌ରେ ପକାଇଲେ । ଜନସଖାର ସଂପାଦକ ନବରଂଗପୁରର ସ୍ୱାଧୀନତାସଂଗ୍ରାମୀ ଲକ୍ଷ୍ମୀଚଂଦ୍ର ଦାଶ ଓ ମୋ ନାଆଁରେ ଦଶହଜାର ଟଂକାର ମାନହାନି ମକଦ୍ଦମା ଜୟପୁର ଜଜ୍‌କୋର୍ଟରେ କଲେ । ମୁଁ ଏବଂ ଗ୍ରାମର ଆଦିବାସୀ ଏବଂ କର୍ମୀମାନେ ମିଥ୍ୟା କେସ୍‌ରେ ପଡ଼ି କୋର୍ଟକୁ ଦୌଡ଼ି ଦୌଡ଼ି ନାକେଦମ୍ ହୋଇଗଲୁ । ମା ରମାଦେବୀଂକୁ ଏ ସବୁ ଘଟଣା ଏବଂ ଫରେଷ୍ଟର କେସ୍‌ରେ କୋର୍ଟ କଚିରିକୁ ଦୈନିକ ଗୋଟିଏ ଲେଖା କେସ୍‌ରେ ଯାଇଁ ଖର୍ଚ୍ଚାଂତ ହେବା କଥା ଲେଖି ଜଣାଇଲି । ମା ମୋତେ ଚିଠି ଲେଖି କଟକ ଡ଼କାଇଲେ । ମୁଁ ମାଂ'କ ପରାମର୍ଶରେ କେଉଁ କେଉଁ ଗାଁରୁ କେତେ ଲେଖା ଟଂକା ଫରେଷ୍ଟର ବିନା ରସିଦରେ ନେଇଛଂତି, କେତେ ଆଦିବାସୀଂକୁ ମାଡ଼ ମାରିଛଂତି, ସମସ୍ତ ତଥ୍ୟ ଦେଇ ଏକ ଦରଖାସ୍ତ ଚିଫ୍ କଂଜରଭେଟର ଥାଆଂତି ପଦାରବିଂଦ ମହାପାତ୍ର ବାବୁ, ମାଂ'କ ଚିଠି ସହ ନେଇ ତାଂକୁ ଦେଲି ଏବଂ ଫରେଷ୍ଟର କରିଥିବା ଅନ୍ୟାୟ ଘଟଣା ସବୁ କହିଲି । ପଦାରବିଂଦ ମହାଶୟ ରାୟଗଡ଼ା ଡି.ଏଫ୍.ଓ.ଙ୍କ ଦ୍ୱାରା ଘଟଣାଟି ଇନ୍‌କ୍ୱାରୀ କରାଇ ଫରେଷ୍ଟରଂକୁ ଚାକିରିରୁ ବାହାର କରିଦେଲେ । ଫରେଷ୍ଟର ଚାକିରି ହରାଇ କୋରାପୁଟରେ ବ୍ୟବସାୟ କରି ବଂଚିଲେ । ଆମେ ମିଛ କେସ୍ ସବୁରେ ଜିଣିଲୁ । ମାତ୍ର କୋର୍ଟକୁ ଦୌଡ଼ି ଖର୍ଚ୍ଚାଂତ ହେବାକୁ ପଡ଼ିଲା । ମାଂ'କ ପରାମର୍ଶ ଚିଠି ଏବଂ ପଦାରବିଂଦ ବାବୁଂକ କାର୍ଯାନୁଷ୍ଠାନ ଯୋଗୁଁ ଏ ଅନ୍ୟାୟରୁ ଆଦିବାସୀଂକୁ ମୁକ୍ତି ମିଳିଲା ।

## ଆଦିବାସୀ ଝିଅ ସହ ବିବାହ

୧୯୫୭ ମସିହାରେ ମା ବାପା ନଥିବା ଏକ ଝିଅ ଭୂଦାନ ଗ୍ରାମଦାନ ଆନ୍ଦୋଳନରେ ଆମମାନଂକ ସାଂଗରେ କାମ କରୁଥିଲା । ତା ନାଆଁ ସରଦେବୀ । ତା ସାଂଗରେ ମୋର ବିଭାଘର ହେଲା, ତା ଭାଇଭଉଣୀମାନଂକ ପ୍ରରୋଚନାରେ, ରାୟଗଡ଼ାଠାରେ । ମାତ୍ର, ବାହାଘରର ବର୍ଷକ ପରେ ଜରରେ କୋରାପୁଟ ଡାକ୍ତରଖାନାରେ ତା'ର ମୃତ୍ୟୁ ହୋଇଗଲା ।

୧୯୫୯ ମସିହାରେ ମୋ କର୍ମକ୍ଷେତ୍ର ଥାଏ ଆଂଧ୍ର-ଓଡ଼ିଶା ସୀମାରେ ସାରିଆପୁଟ୍ ଗାଁ ଓ ପାଖଆଖ ଅଂଚଳ । ଏ ଗାଁରେ କଂଧ, ପରଜା, ଦୋରା ଶ୍ରେଣୀର

ତିରିଶ ଘର ଆଦିବାସୀ ପାହାଡ଼ ଉପରେ ରହୁଥିଲେ । ସେ ଗାଁର ଲୋକ ଟିକିଏ ଚଲାକ ଚତୁର, ଅନ୍ୟ ଆଦିବାସୀ ଗାଁ ଅପେକ୍ଷା ସବୁ କ୍ଷେତ୍ରରେ ଆଗୁଆ । ଗାଁର ବି ବେଶ୍ କୋଠପାଂଠି ଥିଲା । ଗାଁର ମୁଖ୍ୟ ନାୟକଂକ ଘର ପାଖରେ ମୁଁ ଗାଁବାଲାଂକ ସାହାଯ୍ୟରେ ଗୋଟିଏ ଘର କରି ରହୁଥିଲି । ସେତେବେଳେ ସର୍ବୋଦୟ ଅନୁଷ୍ଠାନ ପକ୍ଷରୁ ରାୟଗଡ଼ା ପାଖରେ ଆଦିବାସୀ ପୁଅଝିଅଂକୁ ପାଠପଢ଼ା ଏବଂ ସୂତାକଟା ଇତ୍ୟାଦିରେ ଟ୍ରେନିଂ ଦିଆଯାଉଥାଏ । ଏ ଗାଁର ଆଉ ଝିଅମାନଂକ ସାଂଗକୁ ରାଧାମଣୀ ବୋଲି ଗୋଟିଏ ଝିଅକୁ ସେ ଟ୍ରେନିଂ ପାଇଁ ପଠାଇଲି । ରାଧାମଣୀ ଦି ବର୍ଷର ଟ୍ରେନିଂ ସାରି ଆସି ନିଜ ଗାଁ ସାରିଆପୁଟରେ ସୂତାକଟା କେଂଦ୍ରରେ କାମ କରୁଥାଏ । ଆଉ ଝିଅକର୍ମୀଂକ ସାଂଗରେ କାମ ପାଇଁ ଅନ୍ୟ କେଂଦ୍ରକୁ ବି ଯାଏ । ସେ ଗାଁରେ ଗୋଟିଏ ସ୍କୁଲ୍ ଥିଲା । ସେ ସ୍କୁଲର ଜଣେ ଶିକ୍ଷକ ରାଧାମଣୀକୁ ବାହାହେବାପାଇଁ ଝିଅର ବାପାଂକ ପାଖରେ ପ୍ରସ୍ତାବ ପକାଇଲେ । ଜଣେ ଆଦିବାସୀ ଯୁବକ, ଗାଁ ପଂଚାୟତର ସେକ୍ରେଟେରୀ, ମଧ୍ୟ ରାଧାମଣୀର ଜଣେ ଦାଦାଂକ ମଧ୍ୟସ୍ଥିରେ ବିବାହ ପ୍ରସ୍ତାବ ଦେଇଥିଲେ । ମୋର ପ୍ରଥମ ସ୍ତ୍ରୀ ମରିଯିବା ପରେ ମୁଁ ବିବାହ କଥା ବିଚାର କଲାବେଳେ ରାଧାମଣୀ ମୋ ମନକୁ ଆସିଥାଏ । ରାଧାମଣୀର ବାପା ଜଣେ ସର୍ବୋଦୟ କର୍ମୀ ଭାବରେ ଆମ ସାଂଗରେ କାମ କରନ୍ତି । ସେ ମୋର ଆଚାର, ବ୍ୟବହାର, ଚାଲିଚଳନ, ନିଷ୍ଠା ଓ ସଂଗ୍ରାମୀ କାମ କଥା ଜାଣଂତି । ବିବାହ ପ୍ରସ୍ତାବ ବାବଦରେ ସେ କାହାକୁ କିଛି ନକହି ଚୁପ୍ ଥାଆଂତି । ମୋ ମନର କଥା ଥରେ ରାଧାମଣୀ ତାଂକ ଘରେ ଏକୁଟିଆ ଥିଲାବେଳେ ମୁଁ ତାକୁ କହିଲି । ସେ ମତେ କହିଲା - ଆମ ଗାଁର ସମସ୍ତେ ଥଟ୍ଟା ପରିହାସରେ ମତେ ନିଶାକରଣୀ ବୋଲି କହୁଚଂତି । ତାଂକ ଭାଷାରେ ଯାର ଅର୍ଥ, ନିଶାକରକୁ ଇଛାକଲାଣି ବାହାହେବାକୁ । ମୁଁ କହିଲି, ତମେ କହ, ହଁ, ମୁଁ ନିଶାକରକୁ ବାହାହେବି । ରାଧାମଣୀ କହିଲା, ଆମ ଦାଦା ଲଗେଇଚନ୍ତି ଗାଁ ସେକ୍ରେଟେରୀକୁ ବାହାହେଲେ ଭଲ । ଗାଁ ଶିକ୍ଷକ ବାପାଂକୁ କହିବା କଥା ଶୁଣୁଚି । ମୁଁ କହିଲି, ତମେ ଯାହା ସ୍ଥିର କରିବ, ତା' ହେବ । ଆଦିବାସୀ ଅଂଚଳରେ ସୁଟୁରା ସୁଟୁରୀ କଥା ଅଛି । ମୁଁ ତାକୁ ବହୁତ ବୁଝାଇବାରେ, ସିଏ କହିଲା, ହଁ, ମୁଁ ତମକୁ ବାହା ହେବାକୁ ରାଜି, ହେଲେ ମୋ ବାପାଂକୁ ମନେଇବାଟା ତମର ଦାୟିତ୍ୱ । ମୁଁ କହିଲି , ବାପାଂକୁ ମୁଁ ରାଜି କରାଇଦେବି । ଆସ୍ତେ ଆସ୍ତେ କଥାଟି ସମସ୍ତେ ଜାଣିଲେ । ମୋ ସହିତ କାମ କରୁଥିବା କେତେକ ମୁଖ୍ୟକର୍ମୀ ରାଧାମଣୀ ସହ ମୋ ବିବାହର ବିରୋଧକଲେ ।

ତାଙ୍କ କହିବା କଥା, ମୋ କର୍ମକ୍ଷେତ୍ରରେ ମୁଁ ବାହାହେବାଟା ଉଚିତ ନୁହଁ । ମୁଁ ବଡ଼ ଚିଂତାରେ ପଡ଼ିଲି - ଏଣେ ରାଧାମଣୀକୁ କଥା ଦେଇଚି, ତେଣେ ଏ ଅସୁବିଧା । ଆମ ସର୍ବୋଦୟ ଅନୁଷ୍ଠାନରେ ଶ୍ରୀ ବିଶ୍ୱନାଥ ପଟ୍ଟନାୟକ ଜଣେ ନିଷ୍ଠାବାନ୍ କର୍ମୀ, ତାଙ୍କ କଥାକୁ ସମସ୍ତେ ମାନଂତି । ସେ ସ୍ୱାଧୀନତାସଂଗ୍ରାମୀ, ବ୍ରହ୍ମଚାରୀ, ଆଦିବାସୀ ସେବକ । କୋରାପୁଟର୍ ଆଦିବାସୀ ତାଂକୁ ଆଜ୍ଞା ବୋଲି ଡ଼ାକଂତି । ମୁଁ ଭାବିଲି, ଆଜ୍ଞା ମୋର ବିଭାଘର ରାଧାମଣୀ ସାଂଗରେ ହେବା କଥାକୁ ନିଶ୍ଚୟ ସମର୍ଥନ କରିବେ । ସେ ଖୁବ୍ ଦୂରରେ ଗୁଣପୁର କୁଢେଂଦ୍ରୀ ଆଶ୍ରମରେ ରହୁଥାଆନ୍ତି । ମୁଁ ତାଙ୍କୁ ଚିଠି ଦେଲି, ରାଧାମଣୀ ସାଂଗରେ ମୋ ବାହାଘରପାଇଁ ଆପଣ ଆସି ମତେ ସାହାଯ୍ୟ କରଂତୁ । ମୋ ଚିଠି ପାଇବା ମାତ୍ରେ ଆଜ୍ଞା ବହୁ କଷ୍ଟ ସ୍ୱୀକାର କରି ବଣ ଜଂଗଲ ଘାଟୀ ବାଟ ଅତିକ୍ରମ କରି ଚାଲିଚାଲି ଚାଳିଶ ମାଇଲ ଦୂରରୁ ଆସି ସାରିଆପୁଟରେ ପହଂଚିଲେ । ମତେ ସାଥିରେନେଇ ରାଧାମଣୀର ବାପା ନୀଳାଂବର ଖରଂକ ପାଖକୁ ଗଲେ । ତାଂକୁ କହିଲେ, ନୀଳାଂବର, ରାଧାମଣୀ ସହିତ ନିଶାକରର ବିଭାଘର କରିବାକୁ ମୁଁ ତମକୁ କହୁଚି । ଭାବୀ ଶଶୁର କହିଲେ, ରାଧାର, ନିଶାକରବାବୁର ଯଦି ଇଚ୍ଛା ଅଛି, ମୁଁ ମେଡ଼ି ପାରିବି ନାହିଁ । ରାଧାକୁ, ତା ବାପ ମାଂକୁ ଓ ମତେ ଏକାଠି ବସାଇ ବିଶ୍ୱନାଥ ଆଜ୍ଞା ପଚାରିଲେ, ରାଧା, ନିଶାକରକୁ ତୁ ବିଭାହେଲେ ଭଲ ହେବ ? ରାଧାମଣୀ କହିଲା, ହଁ, ଆଜ୍ଞା, ମୋର ମନ ତାଂକୁ ବିଭା ହେବି । ମୁଁ ବି ହଁ ଭରିଲି । ଜାତି କଥା ପଡ଼ିଲା । ମୁଁ କହିଲି ବୈଷ୍ଣବ । କି ବୈଷ୍ଣବ ? ପାଣ ବୈଷ୍ଣବ । ଏତିକିରେ କଥା ସଇଲା । ବିଭାଘରରେ ଶଶୁରଘର ଚଳଣି ଅନୁସାରେ ସାଦା ଡ଼ାଲି ଭାତ ଇତ୍ୟାଦିର ଭୋଜି ହୋଇଥିଲା । ମାଛ, ମାଂସ, ନିଶା କେହି ଖାଇ ନଥିଲେ । ମୁଁ ମାଂସ, ଅଂଡ଼ା, ଚାହା, କଫି, ବୋତଲର ମୃଦୁ ପାନୀୟ ଇତ୍ୟାଦି କେବେ କିଛି ଖାଇନାହିଁ । ବଡ଼ବଡ଼ିଆ ହାକିମଂକ ଘରକୁ ଗଲେ, ଲେଂବୁ ବା ଦହି ସରବତ୍ ବା ଦୁଧ ଦେଲେ ପିଏ । ୧୯୫୫ ମସିହାରୁ କୋରାପୁଟରେ ଭୂଦାନ କାମରେ ମାସକୁ କୋଡ଼ିଏ-ପଚିଶ ଦିନ ବୁଲିବାକୁ ପଡେ । ଯୁଆଡ଼େ ଗଲେ ମୁଁ ମୋ ନିଜ ରୋଷେଇ କରି ଖାଏ । ମୋର ସ୍ୱଭାବ ଚରିତ୍ର ଢ଼ଂଗଢ଼ାଂଗ ଦେଖି କେହି କେବେ ଜାତି କଥା ପଚାରଂତି ନାହିଁ ।

# କୋରାପୁଟର ହରିଜନ

ମୁଁ ଜାତିରେ ପାଣ ବୈଷ୍ଣବ । ହେଲେ କୋରାପୁଟରେ ପାଣ ନାହାନ୍ତି । ଡ଼ମ (ଡ଼ଂବ), ଘାସୀ, ରେଲି ଜାତିର ହରିଜନ ଅଛଂତି । ପ୍ରତ୍ୟେକ ଆଦିବାସୀ ଗାଂରେ ଦୁଇ ତିନି ଘର ଡ଼ମ ଥାଆଂତି । ସେମାନେ ଗାଁର ମୁଖ୍ୟ ନାୟକଂକ ପାଖରେ ରହି ତାଂକ କହିବା ଅନୁସାରେ କାମ କରଂତି । ଗାଁକୁ କେହି ସରକାରୀ କର୍ମଚାରୀ ବା ଅନ୍ୟ କେହି ଆସିଲେ ନାୟକ ବାରିକକୁ ଡକାଇ ଗାଁର ଅନ୍ୟମାନଂକୁ ଡ଼ାକିଆଣିବାକୁ କୁହଂତି । ପ୍ରତି ଗାଁରେ ବାରିକ ଚଲାଣ ଥାଆନ୍ତି । ଚଲାଣର କାମ ହେଲା, କେହି ଅତିଥି କି କର୍ମଚାରୀ ଆସିଲେ କାହିଁକି ଆସିଚଂତି ବୁଝି ତାଂକ ରହିବା, ଖାଇବାର ସୁବ୍ୟବସ୍ଥା କରିବା । କଟକ ଆଡ଼ର ଲୋକଙ୍କୁ ଆଦିବାସୀ ଘୃଣା କରଂତି ନାହିଁ । କେବଳ ଗଂଜାମ ଜିଲ୍ଲାର ଯେଉଁମାନେ ବହୁ ଆଗରୁ ଆସି ଏଠାରେ ରହି ଯାଇଚଂତି, ସେହିମାନେ କଟକିଆଂକୁ ଘୃଣା କରଂତି ଓ ଆଦିବାସୀଂକ ମନରେ ଘୃଣାଭାବ ପୂରାଇ ଦିଅଂତି । ମୁଁ ତ କଟକିଆ, ହେଲେ ମତେ କେହି ଆଦିବାସୀ କେବେହେଲେ କଟକିଆ ବୋଲି କହି ଘୃଣା କରି ନାହାଂତି । ଯେ ତାଙ୍କ ପ୍ରତି ଖରାପ ଆଚରଣ ବ୍ୟବହାର କରଂତି ତାଂକୁ ସେମାନେ କଟକିଆ କହନ୍ତି ।

ଏଠାକାର ଡ଼ଂବ, ଘାସୀ, ରେଲିମାନେ ଭାରି ଚତୁର । ସେମାନେ କୌଣସି ଜମିବାଡ଼ି ନଥାଇ, ନାନା ପ୍ରକାର କୂଟବୁଦ୍ଧି କରି ବେପାର ଇତ୍ୟାଦି କରି ଭଲରେ ଚଳଂତି । ଘାସୀ ଓ ରେଲିମାନେ ଚୋରି କରନ୍ତି । ଆଦିବାସୀ ଧାନ ଇତ୍ୟାଦି ଖଳାରେ ଅମଳ କରିବାବେଳେ ଡ଼ଂବ, ରେଲିମାନେ କଟାରକୁ (ଖଳାକୁ) ଯାଇ ଧାନ ଇତ୍ୟାଦି ମାଗି ଆଣଂତି । ଏମାନେ ଏଠା ହାଟମାନଂକରେ ବଡ଼ ଚତୁରତାର ସହ ଚୋରି କରିବା ଦେଖିବାକୁ ମିଳେ । ତାଂକର ଦଳ ଅଛି, ଆଠ-ଦଶ ଜଣ କରି । ଆଦିବାସୀମାନେ ଅର୍ଥକାରୀ ଫସଲ ହାଟରେ ବିକି ଶହଶହ ହଜାରହଜାର ଟଂକା ପକେଟରେ ଧରି ଥାଆଂତି । ଘାସୀ ଲକ୍ଷ ରଖି ଜଣକ ପକେଟରୁ ହଠାତ୍ ଟଂକା କାଢ଼ି ସହଯୋଗୀ ହାତକୁ ବଢ଼ାଇଦିଏ, ସିଏ ଆଉ ଜଣକୁ ଦିଏ, ଏପରି କରି ଟଂକା ନେଇଯାଆଂତି । ଯଦି କେହି ଟାଣୁଆ ଆଦିବାସୀ ଜାଣିପାରି ଘାସୀ ହାତକୁ ଧରିପକାଏ, ଘାସୀ ବା ରେଲି ଅନ୍ୟ ହାତକୁ ବଢାଇ ଦିଅଂତି ଓ ଆଖି ପିଛୁଳାକେ ଟଂକା ବହୁତ ଦୂରକୁ ଚାଲିଯାଏ । ମୂଳ ଚୋରି କରିଥିବା ଲୋକ ହାତରେ ଟଂକା ନଥାଏ । ଚୋର ଦଳ ଆଦିବାସୀକୁ ଧରି

ମାଡ଼ମାରଂତି । ସେଥିପାଇଁ ଆଦିବାସୀମାନେ ଘାସୀ, ରେଲିଂକୁ ଡ଼ରଂତି ।

ମୋର ଅଂଗେ ନିଭେଇବା କଥା । ନଂଦପୁର ଗାଁରେ ଜୟ ଘାସୀ ବୋଲି ଜଣେ ଥିଲା । ସେ ଖୁବ୍ ଉଁଚ, ସବଳ, ମୋଟା, ବୁଦୁ ନିଶୁଆ (ବଡ଼ ନିଶୁଆକୁ ଆଦିବାସୀ ବୁଦୁ ନିଶୁଆ କହଂତି) । ତାକୁ ଆଦିବାସୀଂକର ପ୍ରାଣେ ଭୟ । ସେ ଆଦିବାସୀ ଗାଁକୁ ଆସିଲେ ଗାଁ ଲୋକେ ଭୟରେ ତାଟି କବାଟ ବନ୍ଦ କରି ଜଂଗଲ ଭିତରକୁ ପଳେଇ ଯାଆଂତି । ବାଘ ଖାଇଲେ ଭଲ ସିନା, ଜୟ ଘାସୀ ହାବୁଡ଼ରେ ପଡ଼ିଲେ ସେ ଯାହା ଚାହିଁବ ତାହା କରିବ, ଏ ଭୟ ସବୁ ଆଦିବାସୀଂକୁ ଘାରିଥାଏ । ଜୟ ଘାସୀର ଦର୍ପ ଆମେ ଆଖିରେ ଦେଖିଚୁ ଓ ଆଦିବାସୀଂକୁ ସଂଗଠିତ କରାଇ ତା ଦର୍ପ ଆମେ ସର୍ବୋଦୟବାଲା ଭାଂଗି ଚୁର୍‌ମାର୍ କରିଚୁ । ଫଳରେ, ଆମ ସର୍ବୋଦୟବାଲାଂକୁ ଦେଖିଲେ ଜୟ ଘାସୀ ଡ଼ରେ ।

ପୋଡୁଆ ଥାନାକୁ ଏମ୍. କରିମ୍ ନାମକ ଏକ ସବ୍‌ଇନ୍‌ସ୍‌ପେକ୍ଟର ଆସିଲେ – କଳା, ବିରାଟକାୟ, ଉଚ୍ଚତା ଖୁବ୍ ବେଶି । ତାଙ୍କ ରୂପକୁ ଦେଖି ଆଦିବାସୀମାନେ ଭୟରେ ଥରହର ହୋଇଗଲେ । ଗ୍ରାମଦାନ ଗାଁମାନଙ୍କରେ କୋଠପାଣ୍ଠି, ନିଶାମୁକ୍ତି, ସୂତାକଟା, ଲୁଗାବୁଣା, ଗ୍ରାମସଭାଦ୍ୱାରା ଗାଁର କଳି ଝଗଡ଼ା ନିଷ୍ପତ୍ତି ଇତ୍ୟାଦି ନବ ନିର୍ମାଣ କାର୍ଯରେ ଲାଗିଥାଉଁ । କେଉଁଠି ଗାଁମାନଂକରେ ମଦଭାଟି ଥିଲା, ତାକୁ ପୂର୍ଣ ନିଶାମୁକ୍ତ ଗାଁ କରିବା ଉଦ୍ୟମ କରୁଥିଲୁ । ସବ୍-ଇନ୍‌ସ୍‌ପେକ୍ଟର କରିମ୍ ବାବୁ ଆସି ଆମମାନଂକ ଏସବୁ କାର୍ଯ ଦେଖି ଆମ କାର୍ଯକ୍ରମକୁ ହେୟମଣି ଆଂଧ୍ର ପ୍ରଦେଶରୁ ମଦରଂଧା ବ୍ୟବସାୟରେ ପାରିବାର ଶୁଂଢ଼ିମାନଂକୁ ଡ଼କାଇ ଆଣି ଆନ୍ଧ୍ର-ଓଡ଼ିଶା ସୀମା ଗାଁମାନଂକରେ ପଂଦରଟି ମଦଭାଟି କରାଇଲେ । ଗୋଟିଏ ଲେଖା ଭାଟିରୁ ମାସକୁ ଏକହଜାର ଟଂକା ଛିଡ଼ାଇ, ମାସକୁ ମାସ ଟଂକା ପାଇ, କାହାରି କଥା ଶୁଣିଲେ ନାହିଁ । ଆମେ ସର୍ବୋଦୟ କର୍ମୀ ଓ ଗାଁବାଲାଂକର ଏ ଗୋଟିଏ ଚିଂତାର ବିଷୟ ହୋଇଗଲା । ଏ ମଦରଂଧା କାର୍ଯରେ ପୁଲିସ, ଫରେଷ୍ଟ ଓ ରେଭିନ୍ୟୁ ସମସ୍ତଙ୍କୁ ମୋଟା ଅଂକରେ ଟଂକା ମିଳିଲା । ଆଂଧ୍ର-ଓଡ଼ିଶାର ନିଶାଖିଆ ଲୋକଂକର ସୁବିଧା ହୋଇଗଲା ।

ଆଂଧ୍ର-ଓଡ଼ିଶା ସୀମାରେ ଏକ ଭଲ ଗାଁ ଭାଲିଆଗୁଡ଼ା ଠାରେ ଏକ ବିରାଟ କାଂପ ମଦଭାଟି ଜଣେ କରିଥିଲେ । ମଦଖାଇ ସେ ଗାଁର ପିଂଢ଼ାରେ ବାଂତି ହଗା ମୂତା ଲୋକମାନେ କଲେ । ଗ୍ରାମବାସୀ ଥାନାବାବୁ, ଫରେଷ୍ଟବାବୁ ଓ ରେଭିନ୍ୟୁ ବାବୁଂକ

ଭୟରେ କଣ କରିବୁ ବୋଲି ଅସହାୟ ହୋଇ ଆମକୁ ଆସି କହିଲେ: ବାବୁ, ଭାଲିଆଗୁଡ଼ା ଗାଁରେ ଥାନାବାବୁଙ୍କ ସାହାଯ୍ୟରେ ଆଂଧ୍ରର ବିରାଟ କାଂପ ମଦଭାଟି କରି ଆମକୁ ବଡ଼ ହଇରାଣ କରାଉଛଂତି । ଦିନକୁ ଦିନ ମଦଖାଇବା, ଲୋକ ବାଂତି କରିବା, ହଗାମୂତା କରି ପଡ଼ି ରହିବା କେତେ ସହିବୁ । ଆମେ କେତେକ ସହକର୍ମୀ ଓ ଗ୍ରାମର ଶାଂତିସେନା ଓ ଗାଁ ମୁଖ୍ୟଙ୍କୁ ନେଇ ଏକ ମିଟିଂରେ ସ୍ଥିରକଲୁ, ଏ ଭାଲିଆଗୁଡ଼ା ମଦଭାଟିକୁ ଘେରାଉ କରି ଭାଂଗିଦେବା । ଶହେଢଣ ଯୁବକ ଶାଂତିସେନାଂକୁ ସାଂଗରେ ନେଇ ମଦଭାଟି ଘେରାଉ କରି ରଖି ଥାନାକୁ ଲେଖି ଦରଖାସ୍ତ ଦେଲୁ ଏ ଭାଟିକୁ ଆସି ସିଜ୍ କରଂତୁ । ମଦଭାଟି ମାଲିକ ଆସି ଥାନାରେ ଗୁହାରୀ କଲା । ଥାନାବାବୁ କହିଲେ, ନିଶାକର ଦାସକୁ ଗୁଳିକରି ମାରିବି । ଖବର ଶୁଣି ମୁଁ ବ୍ୟସ୍ତ ହେଲି । ଏକ କୁଇଁଟଲ ମଦ ଡ୍ରମରେ ଥାଏ । ମଦରଂଧା ବଂଦ, ମଦଖାଇବା, ବିକ୍ରି ବଂଦ । ସବ୍‌ଇନ୍‌ସ୍‌ପେକ୍ଟରବାବୁ ଆମ ସଂଗଠନ ଇତ୍ୟାଦି କଥା ଦେଖି ଶୁଣିଲେ । ଥାନା ହେଡ୍‌ବାବୁଂକୁ ପରାମର୍ଶ ଦେଲେ, ତମେ ଚୌକିଦାର ବା କନଷ୍ଟେବଳ ହାତରେ ଖବର ଦିଅ, ଥାନାରେ କେହି ନାହାଂତି, ମଦ ଥାନାକୁ ବୋହି ଆଣିଲେ କେସ୍ କରିବୁ । ଏକଥା କହି ଥାନାବାବୁ ଛୁଟି ନେଇ ବିଶାଖାପାଟଣା ଗଲେ । ମୁଁ ମଦଭାଟିକୁ ଆମ କର୍ମୀମାନଂକୁ ଜଗାଇ ଦେଇ କୋରାପୁଟ କଲେକ୍ଟରଂକୁ ଏ ସମସ୍ତକଥା କହି ଏକ ଦରଖାସ୍ତ ଲେଖି ଦେଲି । କଲେକ୍ଟର ଏକ୍ସାଇଜ୍ ସୁପରିନ୍‌ଟେଣ୍ଡେଣ୍ଟଂକୁ କହି ଭାଟି ମଦ ସିଜ୍ କରାଇଲେ । ଏସବୁ ଘଟଣା ପରେ ଥାନାବାବୁ ଆମ ଉପରେ ମିଥ୍ୟା କେସ୍‌ମାନ କରିବାକୁ ଆରଂଭ କରିଦେଲେ । ଥାନାବାବୁ ଏଠାକୁ ଆସି କି କି ଅନ୍ୟାୟ କରିଚଂତି, କେତେ ମଦଭାଟି ବସାଇ ପ୍ରଚୁର ଅର୍ଥ ଉପାର୍ଜନ କରୁଥିବା ତଥ୍ୟମାନ ସଂଗ୍ରହ କରି ଭୁବନେଶ୍ୱର ଗଲି । ସେତେବେଳେ ଶ୍ରୀ ନୀଳମଣି ରାଉତରାୟ ମୁଖ୍ୟମଂତ୍ରୀ ଓ ଶ୍ରୀ ହରିଶ୍ଚଂଦ୍ର ବକ୍ସିପାତ୍ର ମଂତ୍ରୀ ଥାଆଂତି । ନୀଳମଣି ବାବୁ ମୋ ଦରଖାସ୍ତକୁ ହରିଶ୍ ବାବୁଂକୁ ଦେଇ କହିଲେ, ତମେ କୋରାପୁଟ ଲୋକ, ଏ କେସ୍ ଖବର ବୁଝିବ । ହରିଶ୍ଚଂଦ୍ର ବକ୍ସିପାତ୍ର ସାଂଗେ ସାଂଗେ ସବ୍‌ଇନ୍‌ସ୍‌ପେକ୍ଟରଂକୁ ମାଲକାନଗିରି ବଦଳି କରିଦେଲେ । ସବ୍‌ଇନ୍‌ସ୍‌ପେକ୍ଟର କରିମବାବୁ ତାଙ୍କ ବଦଳି ଆଦେଶକୁ ରଦକରି ପାଡୁଆଠାରେ ରହିବାକୁ ବହୁପ୍ରକାର ଉଦ୍ୟମ କଲେ । କୋଡ଼ିଏ ତିରିଶ ହଜାର ଟଂକା ଖର୍ଚ୍ଚ କରି ବିଫଳ ହୋଇ ଏଠାରୁ ଗଲେ । ସେ କରିଥିବା ମିଥ୍ୟା କେସ୍ ଆମେ ଜିଣିଗଲୁ ।

୧୯୭୫ ମସିହା ଇମରଜେନ୍‌ସି ସମୟର ଘଟଣା । ସାହୁକାର, ସରକାରୀ କର୍ମଚାରୀମାନେ ଏକଜୁଟ ହୋଇ ଜଣେ ଦୁର୍ଦ୍ଦାଂତ ଡ଼ଂବ ଯୁବକକୁ କହିଲେ, ତୁ ନିଶାକର ଦାସକୁ ମାରି ଦେଲେ ତୋତେ ପାଂଚହଜାର ଟଂକା ଦେବୁ । ଏ କଥାଟି ମୁଁ ଶୁଣିବାକୁ ପାଇଲି ଏବଂ ସତର୍କ ହୋଇ ଯାଆସ କରୁଥିଲି । ଦିନେ ଗୋଟିଏ ନଡ଼ିଆ ଚାରା ଲଗାଇବା ପାଇଁ କିଛି ଧାନ ଅଗାଡ଼ି ସଂଗ୍ରହ କରିବାକୁ ସଂଧ୍ୟା ପାଁଚଟାରେ ସାଇକେଲରେ ଏକ ବସ୍ତା ନେଇ ଗଲି । ଖଳାରୁ ଧାନ ଅଗାଡ଼ି ଧରି ଫେରିଲା ବେଳକୁ ସଂଧ୍ୟା ହୋଇଗଲା । ମତେ ମାରିବାକୁ ଲାଗିଥିବା ଲୋକ (ନାଆଁ ମିନ୍‌ନ ସ୍ୱାମୀ, ଗୁମ୍ମାଗୁଡ଼ା ଗ୍ରାମରେ ତା ଘର) ମୋ ଯିବାର ସଂଧାନ ପାଇ ମୋ ଆସିବା ବାଟରେ ଏକ ବଣରେ କଂଚା ବାଉଁଶର ଠେଂଗା ଧରି ମୋ ଆସିବା ବାଟକୁ ଅପେକ୍ଷା କରି ଲାଗିଛି । ମୁଁ ସେ ବଣ ପାଖରେ ହେଇଚି ସାଇକେଲରେ, ସେ ହଠାତ୍ ବଣରୁ ବାହାରି ଠେଂଗାକୁ ଉପରକୁ ଉଠାଇଲେ ମୋତେ ବାଡ଼େଇବା ପାଇଁ । ମୁଁ ସାଇକେଲକୁ ଫିଙ୍ଗିଦେଇ ଠେଂଗାକୁ ଧରି ପକାଇଲି । ଦୁଇ ଜଣ ଠେଙ୍ଗାକୁ ଧରି ଝିଂକାଟଣା ହେଲୁ, ମୁଁ ମୋ ଶକ୍ତି ଲଗାଇ ଭିଡି ଧରିଚି, ସେ ତା ଶକ୍ତି ଲଗାଇ ଟାଣୁଚି । ମୁଁ ତାକୁ ବୁଝାଇଲି, ଦେଖ ତୁ ଗୋଟିଏ ଭଲ ପରିବାରର ଲୋକ, ତୋ ବାପା ଜଣେ ଶିକ୍ଷକ, ଏତେ ଭଲ ପିଲା ହୋଇ ଏ ନୃଶଂସ କାର୍ଯ କରିବାକୁ ତୋତେ କିଏ ଶିକ୍ଷା ଦେଇଛି । ଏ ତୋର ବୁଦ୍ଧି ନୁହେଁ । ଦେଖ, ଏଠାରେ କେହି ନାହାଂତି, ବଣ ଜାଗା, ତୋର ବଳ ବେଶୀ ହେଲେ ମୋତେ ମାରିବୁ, ମୋର ବଳ ବେଶୀ ହେଲେ ତତେ ମାରିବି । ଅଂଧାର ହୋଇ ଆସୁଛି । ଏତେବେଳେ ପରମେଶ୍ୱର ତାକୁ ସଦ୍‌ବୁଦ୍ଧି ଦେଲେ । ସେ କହିଲା, ବାଡ଼ି ଛାଡ଼, ବାଡ଼ି ଛାଡ଼, ବାବୁ ମୁଁ ବାଡ଼େଇବି ନାହିଁ । ମୁଁ ହଠାତ୍ ଠେଂଗାଟି ଛାଡ଼ି ଦେଇ ସାଇକେଲକୁ ଟେକି ଧରିଲି । ସେ ବାଡ଼େଇଲେ ସାଇକେଲକୁ ତା ଉପରେ ପକାଇ ମାଡ଼ି ବସିବି । ଯାହା ହେଉ, ତା ହୃଦୟ ବଦଳିଗଲା, ସେ ଠେଂଗାଟି ଧରି ଦୌଡ଼ି ପଳାଇଗଲା । ଏଥର ମୁଁ ରକ୍ଷା ପାଇଗଲି । ସେ ମୋତେ ମର୍ଡର କରିବାକୁ ଲାଗିଥିବା କଥା ଯାହା ଶୁଣିଥିଲି, ତା ସତ୍ୟ ହେଲା । ଏହିପରି ଆଦିବାସୀ, ଦୁର୍ବଳ ଶ୍ରେଣୀ ଲୋକଂକର ସେବା କାର୍ଯରେ ମୁଁ ଶେଷ ଜୀବନ ଯାଏ ଲାଗିଥିବି, ଏ ବ୍ରତ ମୋ ମନରେ କରି ନେଇଛି ।

ପ୍ରାୟ ତିରିଶ ବର୍ଷ ତଳର କଥା । ଥରେ ସର୍ବୋଦୟ ମଂଡ଼ଳର ବୈଠକକୁ

କଟକ ଯାଇଥିଲି । ମା ରମାଦେବୀଂକୁ କହିଲି, କୋରାପୁଟର ବଣ ଜଂଗଲ ଘାଟି ପାହାଡ଼ ଘେରରେ ଥିବା ଆଦିବାସୀ ଗାଁରେ ବୁଲି ଆପଣମାନଂକ ନିର୍ଦ୍ଦେଶରେ ଜନସେବା କରୁଚି । ହେଲେ ବାହାର ଦୁନିଆର କୌଣସି ଖବର ଅଂତର ନଜାଣି ଅଂଧ ପରି ରହିବାକୁ ପଡୁଚି । ମା ପଚାରିଲେ, କଅଣ ଚାହୁଁଚ । କହିଲି, ଖଂଡ଼େ ଦୈନିକ ସମାଜ ମୋ ନାଁରେ କଲେ ଦେଶ ଦୁନିଆର ବହୁତ ଖବର ଜାଣି, ଆଦିବାସୀଂକୁ ସଚେତନ କରିବା ସାଂଗକୁ ଆମର ବୌଦ୍ଧିକ ବିକାଶ ଘଟଂତା । ମା କିଛି ସମୟ ମୋ ଆଡ଼େ ଅନେଇ ଚିଂତା କରି କହିଲେ, ନିଶାକର, ତମେ ଭଲ କଥାଟିଏ କହିଚ । ହେଲେ, ସର୍ବୋଦୟ ମଂଡ଼ଳ ପାଖରେ ଏତେ ଟଂକା ନାହିଁ । ଆମେ ଚାଂଦା କରି ଲୋକ ଆଧାରରେ ଗ୍ରାମସ୍ୱରାଜ୍ୟ ଆଂଦୋଳନ ଚଳାଉଚେ । ଭାବି କହିଲେ, ତମେ ଗୋଟିଏ କାମ କର । ମୁଁ ଖଂଡ଼ିଏ ଚିଠି ଦେଉଚି, ଯାଇ ସମାଜ ଅଫିସରେ ରାଧାନାଥବାବୁଂକୁ ଦେବ । ମୁଁ ଖୁସିହୋଇ ଚିଠିଧରି ସମାଜ ଅଫିସ ଆସିଲି । ବାବୁଜୀଂକୁ (ରାଧାନାଥବାବୁଂକୁ) ଚିଠିଟି ଦେଇ ନମସ୍କାର କଲି । ବାବୁଜୀ ମାଂ'କ ଚିଠି ପଢ଼ି ମୋ ମୁହଁକୁ ଅନାଇ କହିଲେ, ତମେ ବହୁତ ଭଲ କାମ କୋରାପୁଟରେ କରୁଚ, ମୁଁ ଶୁଣୁଚି । ତମକୁ ନିଶ୍ଚୟ ଏକ ଦୈନିକ ସମାଜ ମାଗଣାରେ ଆମ ଅନୁଷ୍ଠାନ ପକ୍ଷରୁ ଆଜିଠାରୁ ଦିଆଯିବ । ମୁଁ ଖୁସି ହୋଇ ବାବୁଜୀଂକୁ ନମସ୍କାର କରି ଆସି ମା ରମାଦେବୀଂକୁ ଜଣାଇଲି । ସେ ଖୁସିହେଲେ । ବାବୁଜୀଂକ ଆଶୀର୍ବାଦରୁ ଦୈନିକ ସମାଜ ଆଜି ପର୍ଯ୍ୟଂତ ନିୟମିତ ପାଇ ଦେଶ ବିଦେଶର ଖବର ଜାଣି ଆଦିବାସୀଂକୁ ସଚେତନ କରିବାକୁ ହେଉଚି । ରାଧାନାଥବାବୁ ଯେପରି ତାଂକ ଗୁରୁ ପଂ. ଗୋପବଂଧୁଂକ ଭଳି ସମାଜରେ ଅନ୍ୟାୟ ଅତ୍ୟାଚାର ବିରୋଧରେ ଲେଖି ସାଧାରଣ ନାଗରିକଂକୁ ପ୍ରେରଣା ଯୋଗାଉଥିଲେ, ତାଂକ ଆଶୀର୍ବାଦରୁ ସମାଜରେ ସେପରି ଏବେବି କରାଯାଉଚି ।

ଗୋଟିଏ ଭଜନ ମୁଁ ପ୍ରାର୍ଥନା ସମୟରେ ବିନୋବାଂଜୀଂକୁ ଶୁଣାଏ -

"ଯେଉଁଠାରେ ଖାଲି ଲୁହ,
ପ୍ରଭୁ ହେ, ସେହିଠାରେ ମତେ ନିଅ
ଆଜୀବନ ଯିଏ କାଂଦୁଛି ଖାଲି
ପୋଛିବି ତା ଆଖି ଲୁହ,
ପ୍ରଭୁ ହେ, ସେହିଠାରେ ମତେ ନିଅ ।
ଜୀବନକୁ ଯିଏ ମଣିଅଛି ଭାର,

ଚିରଦିନ ମୁଦା ହସର ଦୁଆର,
ଜୀବନ ମରଣ ଭେଦ ନ ବୁଝିଣ
ବଂଚିବା ତା ଦୁର୍ବିସହ, ପ୍ରଭୁ ହେ ।୧ ।
ସେହିଆଡ଼େ ମତେ ନିଅ, ଭଗବନ, ନିଅ,
ପୋଛିବି ମୁଁ ତା'ର ସଜଳ ଆଖିର ଲୁହ ।
କହିବି ତାହାରେ ଡ଼ାକି,
ଶୁଣ ହେ ଦୁଃଖର ସାଥୀ,
ଆମ ଭଗବାନ ଦେଇଛି ଯେ ଦାନ,
ମୋ ଠାରୁ ତା କାଢ଼ିନିଅ, ସାଥୀ ହେ,
ମୋତେ ତୁମ ଲୁହ ଦିଅ ।୨ ।'

ଏଇ ପ୍ରକାର ଜୀବନ ବିତାଇ ରାଧାନାଥବାବୁ ଚାଲିଗଲେ ।

## ପରବର୍ତ୍ତୀ ଅବସ୍ଥା

ମୋଟ ଉପରେ, କୋରାପୁଟରେ ଭୂଦାନ ଗ୍ରାମଦାନ କାମରେ ବହୁତ ପ୍ରଗତି ହୋଇଥିଲା । ସ୍ଥାନିକ ତଥା ବାହାରୁ ଆସିଥିବା ଶହଶହ ଉତ୍ସାହୀ କର୍ମୀ କାମ କରୁଥିଲେ । ଗାଁମାନଂକରେ ଭୂମିହୀନଂକୁ ଭୂମିବଂଟନ, ଗ୍ରାମସଭା ଗଠନ, ଗାଁ କଳି ଗାଁରେ ତୁଟେଇବା, କୋର୍ଟକଚିରି ବର୍ଜନ, ଗାଁପାଂଠି ରଖି ଧାରକରଜ ଦେବା, ସାହୁକାରର ଶୋଷଣରୁ ମୁକ୍ତି, ନିଶାମୁକ୍ତି, ଇତ୍ୟାଦି କାମ ଜୋରସୋରରେ ଚାଲିଥିଲା । ସବୁ କ୍ଷେତ୍ରରେ ଆମେ ଜିଣୁଥିଲୁ, ଗାଁମାନଙ୍କୁ ଗ୍ରାମସ୍ୱରାଜ ଆଡ଼କୁ ନେଉଥିଲୁ । ଶୁଣି ଆଶ୍ଚର୍ଯ୍ୟ ହେବେ, ପାଡୁଆ ଥାନାକୁ ଅଧିକାଂଶ ଗ୍ରାମବାସୀ ଯାଉ ନଥିଲେ । କୌଣସି ନ୍ୟାୟ ନିଷ୍ପତ୍ତି ଥାନାରେ ହେଉ ନଥିଲା । ଭୂଦାନ କର୍ମୀ ଥିବା ଗାଁମାନଙ୍କରେ ଶହଶହ କଳି କଜିଆର ନ୍ୟାୟ ନିଷ୍ପତ୍ତି ଗାଁରେ ହିଁ ହେଉଥିଲା । ୧୯୫୭ ରୁ ୧୯୬୩ ଯାଏ ଏ ପ୍ରକାରର ହାଉଆ ଥିଲା ।

ଏତେ ବିରାଟ ପରିମାଣରେ ଗ୍ରାମଦାନ ହେଲାରୁ ଓଡ଼ିଶା ସରକାର ଏକ ଭୂଦାନ-ଗ୍ରାମଦାନ ଆଇନ ପ୍ରଣୟନ କଲେ । ଭୂଦାନଯଜ୍ଞ ସମିତି ଗଠନ କରି ତା

ଅଧୀନରେ ଅମିନମାନେ ନିଯୁକ୍ତ ହେଲେ । ଆଇନ ଅନୁସାରେ ତହସିଲ୍‌ଦାରମାନଂକୁ ଗ୍ରାମଦାନ ଇନ୍‌କ୍ୱାରୀ କରିବାର ଅଧିକାର ଦିଆଗଲା । ବ୍ୟବସ୍ଥା ହେଲା ଯେ ଗ୍ରାମଦାନ-ଗାଁରେ ଭୂମିଥିଲା ଲୋକେ ଓ ଭୂମିହୀନ ଲୋକେ ମିଶି ଏକ ଗ୍ରାମସଭା ହେବ । ଭୂମିଥିଲା ଲୋକେ ତାଂକ ଭୂମିର ପଟ୍ଟା ଆଣି ଗାଁର ଭୂଦାନ କର୍ମୀଂକୁ ଦେବେ । କର୍ମୀ ଏକ ଦାନପତ୍ରରେ ପଟ୍ଟାରେ ଥିବା ଜମିର ସର୍ଭେ ପ୍ଲଟ ନଂବର ଇତ୍ୟାଦି ଲେଖି ତହିଁରେ ଦାତାଂକ ଦସ୍ତଖତ ନେବେ । ଦାନପତ୍ରରେ ଲେଖାଥାଏ ଯେ ଉକ୍ତ ଭୂମିକୁ ଦାତା ଦାନ କଲେ, ସେ ଭୂମି ଉପରେ ତାଂକର ମାଲିକାନା ରହିବ ନାହିଁ । ଭୂମିକୁ ଏଣିକି କେହି ବିକ୍ରିବଟା କରି ପାରିବେ ନାହିଁ । କେବଳ ତାକୁ ଚାଷକରି ଖାଇବାର ଅଧିକାର ଗାଁବାଲାଂକର ରହିବ । ଏ ସମସ୍ତ ଜମି ଭିତରୁ ଯାହାଂକର କିଛି ଜମି ନଥିଲା ତାଂକୁ କିଛି କିଛି ଜମି ଗ୍ରାମସଭାରେ ଦିଆଯିବ । ସବୁ ଦାନପତ୍ର ଓ ଜମି ବଂଟନର ଏକ କପି ନେଇ ଭୂଦାନଯଜ୍ଞ ନିବେଦକ କର୍ମୀ ତହସିଲ୍‌ଦାରଂକୁ ଦେବେ । ତହସିଲ୍‌ଦାର ସେ ସବୁ କାଗଜପତ୍ର ପାଇ ସବୁ ଦାତାମାନଂକୁ ଇନ୍‌କ୍ୱାରୀ ପାଇଁ ନୋଟିସ୍ ଦେବେ । ସେ ଇନ୍‌କ୍ୱାରୀ କେଉଁଦିନ, କେଉଁଠି, କେତେବେଳେ ହେବ ତାହା ସଂପୃକ୍ତ ଲୋକଂକୁ ଓ ଭୂଦାନ କର୍ମୀକୁ ଜଣାଇବେ ।

କେତେକ ତହସିଲ୍‌ଦାର ଏବଂ ରାଜସ୍ୱ ନିରୀକ୍ଷକ ଭୂଦାନ, ଗ୍ରାମଦାନର ବିରୋଧୀ ଥାଆନ୍ତି । ସେମାନେ ଭାବନ୍ତି, ଗ୍ରାମଦାନ ହୋଇଗଲେ ତାଂକର ଆଉ କୋଣସି ଅଧିକାର ଗାଁବାଲାଂକ ଉପରେ ରହିବ ନାହିଁ । ଗ୍ରାମବାସୀଂକଠାରୁ ଠକିକରି ନେଇପାରିବେ ନାହିଁ । ଥରେ ଜଣେ ତହସିଲ୍‌ଦାର ଦିନେ ସକାଳ ଦଶଟାବେଳେ ଇନ୍‌କ୍ୱାରୀ ପାଇଁ ଚାରି-ପାଁଚ ଗାଁର ଗ୍ରାମବାସୀଂକୁ ନୋଟିସ୍ ଦେଲେ । ମୁଁ ସେଠାର ଭୂଦାନ ଯଜ୍ଞ ସମିତିର ଅଧିକାରୀ (ଅଫିସର) । ମୁଁ ଆମ ଅମିନ ଓ କେତେକ ସ୍ଥାନୀୟ ଆଦିବାସୀ କର୍ମୀଂକ ସାଂଗରେ ତହସିଲ୍‌ଦାରଂକ କ୍ୟାଂପ କୋର୍ଟକୁ ଗଲି । ମାତ୍ର ଆମେ ଯିବା ଆଗରୁ ରାଜସ୍ୱ ନିରୀକ୍ଷକ ଯାଇ, ସାହେବ ଆଠଟା ବେଳକୁ ଇନ୍‌କ୍ୱାରୀ କରିବେ, ତମେ ପହଁଚିବ ବୋଲି ଗାଁବାଲାଂକୁ କହି ଆସିଥିଲା । ଗାଁବାଲା ଆଠଟାରେ ପହଁଚିଥିଲେ । ତହସିଲ୍‌ଦାର ଭୂମିଦାତାଂକୁ କହିଲେ, ତମ ଭୂମିସବୁ ଭୂଦାନ କର୍ମୀଂକୁ ଦେଇଦେଲ, ସେମାନେ ତମର ସମସ୍ତ ଜମି ନେଇଯିବେ । ତମର ଜମି ଉପରେ କୌଣସି ଅଧିକାର ରହିବ ନାହିଁ । ସରକାର ତୁମକୁ ଋଣ ଦେବେ ନାହିଁ । ଭୂଦାନ କର୍ମୀମାନେ ତମ ଜମିକୁ

ବିକ୍ରି କଟକ ପଳାଇବେ । ଗାଁର ଭୂମିଦାତାମାନେ ଯା ଶୁଣି ଡ଼ରିଗଲେ, କହିଲେ, ନାଇଁ ଆଜ୍ଞା, ଆମେ ଭୁଦାନକୁ ଜମି ଦେବୁ ନାହିଁ । କାଟି ଦିଅନ୍ତୁ । ମୁଁ ଆମ ଅମିନ ଓ କର୍ମୀମାନଂକୁ ଧରି ନଅଟାବେଳେ ପହଁଚି ଶୁଣିଲି ଯେ ତହସିଲ୍‌ଦାର ଆଗରୁ ପହଁଚି ଲୋକଂକୁ ଭୁଲ୍ କଥା କହି ଭୟଭୀତ କରାଇ ଦେଇଚଂତି । ମୁଁ ତହସିଲ୍‌ଦାରଂକୁ ଯାଇ କହିଲି, ଆପଣ ଦଶଟାରେ ଆସିବାକୁ କହି ଆଠଟାରେ ଆସି ନିରୀହ ଗାଁଲୋକଂକୁ ଡ଼ରାଇ ଦେଇଛଂତି । ଭୂଦାନ କର୍ମୀ ସବୁ ଜମି ନେଇଯିବେ ଇତ୍ୟାଦି କହି ଭୂଦାନ ବିରୋଧୀ କାମ କରିଛଂତି । ଆପଣଙ୍କୁ ଅର୍ଥନୀତି ଜଣାନାହିଁ । ଜମିକୁ ଛତା ସାଂଗରେ ତୁଳନା କରି ଗ୍ରାମବାସୀଙ୍କୁ ଡ଼ରାଇ ଗ୍ରାମଦାନକୁ କାଟି ଦେଇଛଂତି । ମୁଁ ଗାଁଲୋକଂକୁ ଡ଼ାକି କହିଲି, କୋଦାଳ ଶାବଳ ଆଣି ଏ ଭୂମିକୁ ହାଣି ତହସିଲ୍‌ଦାରଂକ ଉପ୍‌ରେ ପୂରାଅ, ଦେଖିବା କେତେ ଜମି ସେ ନେବେ । ତହସିଲ୍‌ଦାର ମୋ କଥା ଶୁଣି ଲଜ୍ଜିତ ହୋଇଗଲେ ।

ଏ ସବୁ ଭୂଦାନ ବିରୋଧୀ କଥା ଆମ କର୍ମୀ ଓ ନେତୃବୃଂଦଂକ ଭିତରେ ଚର୍ଚ୍ଚାର ବିଷୟ ହେଲା । ଭୂଦାନ ବିରୋଧରେ ବହୁତ ସରକାରୀ କର୍ମଚାରୀ ଲାଗିପଡ଼ିଲେ । କାରଣ ଗାଁର ସଂଗଠନ, ଗ୍ରାମସଭା, ଗାଁର ଏକତା, ସୂତାକଟା, ଖଦି ଗ୍ରାମୋଦ୍ୟୋଗ, ଭୂମିଦାନ, ସରକାରଂକ ପକ୍ଷରୁ ହଳ ବଳଦ କିଣିବାକୁ, ଜମି ମରାମତ୍ କରିବାକୁ ଅର୍ଥ ପ୍ରଦାନ ସାଂଗକୁ ଲୋକନାୟକ ଜୟପ୍ରକାଶଂକ ଆହ୍ୱାନରେ ଟାଟା କଂପାନୀ କୋଦାଳ, ଖନ୍ତି, ଶାବଳ ଇତ୍ୟାଦି ଯୋଗାଇଦେବା ଫଳରେ ଶୋଷଣକାରୀ କର୍ମଚାରୀ ଓ ବେପାରୀଂକ ଅନ୍ୟାୟ, ଅତ୍ୟାଚାର, ଶୋଷଣ ପ୍ରାୟ ବଂଦ ହୋଇଗଲା । ୧୯୭୨ - ୧୯୭୩ ମସିହା ଯାଏ ଗାଁଗୁଡ଼ିକ ଖୁବ୍ ଭଲଭାବରେ ସଂଗଠିତ ହୋଇ ଆତ୍ମନିର୍ଭରଶୀଳ ହୋଇଗଲେ ।

ଏତେବେଳକୁ କେତେକ ମୁଖ୍ୟ କର୍ମୀ ଓ ନେତୃବୃଂଦ ଧୀରେ ଧୀରେ କୋରାପୁଟରୁ ଚାଲିଗଲେ । ପୂ. ଗୋପବାବୁ, ଆଚାର୍ଯ୍ୟ ମହାଶୟ ଇତ୍ୟାଦି ଅନେକ ନେତୃସ୍ଥାନୀୟ ଲୋକ ମରିଗଲେ । ଅନେକ ମୁଖ୍ୟକର୍ମୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ି ଭୂଦାନ କାମରୁ ଚାଲିଗଲେ । ଆଦିବାସୀ ଗ୍ରାମରେ କାମ କରୁଥିବା କେତେ ସ୍ଥାନୀୟ ମୁଖ୍ୟକର୍ମୀ ମରିଗଲେ । ଇମର୍‌ଜେନ୍‌ସିପରେ ସରକାରୀ କଳ, ସାହୁକାର ଦଳ ଓ ରାଜନୈତିକ ଦଳମାନଂକର ପ୍ରଭାବ ଏତେ ବଢ଼ିଗଲା ଯେ ଗାଁମାନଂକରେ ଥିବା ସ୍ୱାର୍ଥପର

ଚଲାକ୍ ଯୁବକମାନଂକୁ ଟାଉଟରୀ ଶିକ୍ଷା ଦେଇ ସେହିମାନଂକୁ ବୋଲକରା ଭାବରେ ରଖି ଗାଁର ସଂଗଠନକୁ ଧୀରେ ଧୀରେ ଭାଂଗିଦେବାର ଉଦ୍ୟମ ଚାଲିଲା । ନିଧିମୁକ୍ତିଯୋଗୁଁ କର୍ମୀମାନେ ଯେ ଯାହାବାଟରେ ଚାଲିଗଲେ । ମୋଭଳି ଖୁବ୍ କମ୍ କର୍ମୀ ରହିଲେ । ଆଂଦୋଳନ ଜାରି ରହି ପାରିଲା ନାହିଁ । ଉଦାହରଣ ସ୍ୱରୂପ: ଭୂମିହୀନ ଜମିକୁ ଚାଷକରି ଖାଉଥିଲା । ରେଭେନ୍ୟୁବାଲାଙ୍କ ଠାରୁ ଶିକ୍ଷାପାଇ ଦାତାଂକ ପୁଅମାନେ ସେ ଜମି ଛଡ଼ାଇନେଲେ । ଗ୍ରାମ କୋଠପାଂଠିକୁ ଟାଉଟର୍ ସାଜି ଲୋପ କରାଇଲେ । ଅନ୍ୟାୟ ଅତ୍ୟାଚାର ବଢ଼ିବାକୁ ଲାଗିଲା । ଏବେ ରାଜନୀତିରେ ସ୍ୱାର୍ଥପର ଲୋକ ଏତେ ସଂଖ୍ୟାରେ ବଢ଼ିଲେଣି ଯେ ଅସତ୍ୟ, ଅନ୍ୟାୟ, ଚୋରି, ଡ଼କାୟତି, ଲୁଟ୍, ହତ୍ୟା, ନିଶାସକ୍ତ ହୋଇ ଗାଁ ଛାରଖାର ଅବସ୍ଥାକୁ ଗଲାଣି । ହଁ, ଅଳ୍ପ କେତେକ ଗାଁରେ କୋଠପାଂଠି ରହିଚି ।

ଅସ୍ପୃଶ୍ୟ ସମାଜ ଆମ ପିଲାବେଳେ ଯେପରି ଥଲା, ଏବେ ଚାଲିଚଳଣ, ଆଚାରବ୍ୟବହାର, ବେଶଭୂଷା, ସବୁ ପ୍ରକାରେ ବଦଳି ଯାଇଛି । କେବଳ ସ୍ପୃଶ୍ୟ ସମାଜର ଅସହିଷ୍ଣୁତା, ରକ୍ଷଣଶୀଳ ମନୋଭାବ ଯୋଗୁଁ କଳଂକିତ ଭେଦଭାବର ବାଡ଼-ପାଚିରି ଗାଁ ଗାଁମାନଂକରେ ବଳବତ୍ତର ହୋଇ ସବୁ କ୍ଷେତ୍ରରେ ରହିଚି । ମୁଁ ଗତବର୍ଷ ଆମ ଗାଁ ସିଂହପୁରକୁ ଯାଇଥିଲି । ପିଲେ କହୁଥିବା ଶୁଣିଲି ଯେ ଗାଁ ବଜାରରେ ଥିବା ସେଲୁନ୍‌ରେ ହରିଜନମାନଂକୁ ବାଳକାଟିବା ଇତ୍ୟାଦିରେ ବାରଣ କରୁଚଂତି । ସ୍ପୃଶ୍ୟ ଅସ୍ପୃଶ୍ୟ ସମାଜର ଯୁବକମାନେ ଏକାଠି ବସିବା, ଏକାଠି ଖାଇବାରେ ଛୁଆଁ ଅଛୁଆଁ ଆଗଭଳି ନାହିଁ । କେବଳ ସ୍ପୃଶ୍ୟ ସମାଜର ଭୟ ଯୋଗୁଁ ତାଂକ ପରିବାର ଭିତରେ ଭେଦଭାବ ବଳବତ୍ତର ରହିଚି ।

ସର୍ବୋଦୟ ସଂସ୍ଥା ୧୯୫୭ ମସିହାରୁ ନିଧିମୁକ୍ତ ହେଲା ଦିନରୁ ମୁଁ ଲୋକ ଆଧାରରେ ଚାଂଦା ଇତ୍ୟାଦିରେ ଚଳି ଆସୁଛି । ଆଦିବାସୀଂକ ଭିତରେ ଥିବା ପୁରୁଣା କର୍ମୀ ଓ ଲୋକମାନେ ମରିଗଲେଣି । ଏବର ରାଜନୀତି ଆଦିବାସୀଂକ ଜୀବନକୁ କଳୁଷିତ କରିବାରେ ଲାଗିଛି । ଆଗପରି ଚାଂଦା ଇତ୍ୟାଦି ଲୋକେ ଦେଉ ନାହାଂତି । ବର୍ତ୍ତମାନ ଚାଂଦା ଇତ୍ୟାଦିରେ ଚଳିବା କଷ୍ଟକର ହେଉଛି । କଟକରେ ଥୋରିଆସାହି ଅଫିସ ଓ ତହିଁର କର୍ମୀମାନେ କେବଳ ଚାଂଦାରେ ଚଳନ୍ତି । ମା ରମାଦେବୀ ଓ ତାଂକପରେ ମନମୋହନଭାଇ ବେଳେ ବେଳେ ସୁବିଧା ଦେଖି କାହାକୁ କିଛି କିଛି ଚାଂଦା କରି

ସାହାଯ୍ୟ କରୁଥିଲେ । ଏବେ ସେଠାର ଅବସ୍ଥା ସେତେ ଭଲ ନାହିଁ । କଟକରେ ମାସିକିଆ, ବର୍ଷିକିଆ ଚାଂଦା ଦିଅଂନ୍ତି । ଏଠାରେ ଗାଁମାନଂକରେ ଶସ୍ୟଦାନ ଚାଂଦା ଉଠାଇ ମୁଁ ଚଳୁଥିଲି ଓ କେତେକ କର୍ମୀଂକୁ ଚଳାଉଥିଲି । ଗ୍ରାମଦାନ ଗାଁରେ ପ୍ରତ୍ୟକ ଘରୁ ତିନି କେଜିଆ ଗୌଣୀରେ ଏକ ଗୌଣୀ ଧାନ ବା ମାଂଡ଼ିଆ ମାଘ ଫଗୁଣ ମାସରେ ଅମଳ ବେଳକୁ ଚାଂଦା ଦେଉଥିଲେ । ସେତକ ଖାଦ୍ୟ ବର୍ଷକୁ ନିଅଂଟ ହୁଏ । ଏବେ ଗାଁର ଯୁବକମାନେ ଆଉ ଶସ୍ୟ ଚାଂଦା ଦେଉନାହାଂତି । ଏ ପ୍ରକାର ଆର୍ଥିକ ଦୂରବସ୍ଥା ଯୋଗୁଁ ମୋର ପୁଅ ଝିଅଂକୁ ଟିଉଶନ୍ କରି ପାଠ ପଢ଼ାଇ ନପାରିବାରୁ ମୋର ତିନି ପୁଅ ଦି ଝିଅ ମାଟ୍ରିକ୍ ଫେଲ୍ ହୋଇ ରହିଗଲେ । ଇମର୍‌ଜେନସିବେଳେ ସର୍ବୋଦୟ କର୍ମୀଂକୁ ଜେଲରେ ରଖିଲେ । ମତେ ପୁଲିସ, ସି.ଆଇ.ଡ଼ି. ଜଗିକରି କୁଆଡ଼େ ଛାଡ଼ିଲେ ନାହିଁ । ମୋର ଏ ଅବସ୍ଥା ଦେଖି ମା ରମାଦେବୀ ମୋ ବଡ଼ପୁଅକୁ ଅନୁଗୁଳ ବାଜିରାଉତ ଛାତ୍ରାବାସରେ ରଖାଇଲେ । ବଡ଼ଝିଅ ସତ୍ୟଭାମାପୁରରେ ରହି ପଢ଼ିଲା । ସେ ଦି ଜଣ ମାଟ୍ରିକ ଯାଏ ପଢ଼ି ଫେଲ୍ ହୋଇ ରହିଗଲେ । ସାନ ଝିଅ ଓ ଆଉ ଦି ପୁଅ ବି ମାଟ୍ରିକ ଯାଏ ପଢ଼ି ଫେଲ୍ ହୋଇ ରହିଗଲେ । ଏବେ ମୁଁ ଆଶ୍ରମ ଭିତରେ ଥିବା ସାତ ଏକର ଢ଼ିପ ଜମିକୁ ତିନି ପୁଅଂକ ସାହାଯ୍ୟରେ ଚଷି କିଛି ଫସଲ ଆମଦାନୀ କରିବା କାମରେ ଲାଗିଚି । ଧାର ଉଧାର କରି ଚାଷ କାମ କରୁଚି ।

ବାପା ଗୋପବଂଧୁ ଚୌଧୁରୀ, ମା ରମାଦେବୀ, ମନମୋହନ ଭାଇ, ତୁନି ଅପା, ଶରତ ଗୁରୁଜୀ, ମା ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀଂକ ପରିବାର ଯୋଗୁଁ ମୁଁ ମଣିଷ ହୋଇଛି । ଏମାନେ ଅଧିକାଂଶ ଚାଲିଗଲେଣି । ତାଙ୍କରି ସ୍ନେହ ଆଶୀର୍ବାଦ ମୋତେ ବାଟ ଦେଖାଉଛି ଏବଂ ଶେଷ ଜୀବନ ଯାଏ ଏହି ସର୍ବୋଦୟ ଆନ୍ଦୋଳନରେ ଗ୍ରାମ ସ୍ୱରାଜ୍ୟ ସ୍ଥାପନା ଦିଗରେ କାର୍ଯ୍ୟ କରୁଥିବି । ଏ ମୋର ଶେଷ ନିଷ୍ଠା ଓ ଇଚ୍ଛା ଅଟେ । ମୋ ଜୀବନରେ ଅଂଗେ ନିଭେଇଥିବା କେତେକ ମୁଖ୍ୟ ଘଟଣା ଏଥିରେ ଉଲ୍ଲେଖ କଲି । ବହୁତ ଘାତ ପ୍ରତିଘାତ ମଧ୍ୟରେ ଏବେ ମଧ୍ୟ ସଂଗ୍ରାମ ଚାଲୁ ରହିଛି । ଜଣେ ସର୍ବୋଦୟ କର୍ମୀ ହିସାବରେ ଆରମ୍ଭରୁ ଆଜି ଯାଏ ନିଷ୍ଠାର ସହିତ ମୋର କର୍ତବ୍ୟ କରି ଚାଲିଛି ।

ଅକ୍ଟୋବର, ୨୦୦୪

ପୋ. ପାତୁଆ-୭୬୪ ୦୩୮, ଜି. କୋରାପୁଟ, ଓଡ଼ିଶା